ପିତୃଋଣ
(ଗଳ୍ପ ସଂକଳନ)

ବାସନ୍ତୀ ମହାନ୍ତି

©-ଶ୍ରୀହର୍ଷ ଦାଶ, ପ୍ରଥମ ସଂସ୍କରଣ-୨୦୦୭
ପ୍ରକାଶକ : ସରସ୍ୱତୀ,ଗୌରୀନଗର,ଭୁବନେଶ୍ୱର
ପ୍ରଚ୍ଛଦ : ରମାକାନ୍ତ ସାମନ୍ତରାୟ
ମୁଦ୍ରଣ : ସରସ୍ୱତୀ,ଭୁବନେଶ୍ୱର
ମୂଲ୍ୟ : ୭୦ ଟଙ୍କା

PITRURUNA
Basanti Mohanty

© Shriharsh Dash
Published by Saraswati , Gouri Nagar, Bhubaneswar-2
First Edition -2007
Cover : Ramakanta Samantaray
Price : 70/-
**ISBN-81-903558-6-4**

ମୋର ପରମ ପୂଜ୍ୟ ଶାଶୁ, ଶ୍ୱଶୁର
ଶ୍ରୀମତୀ ଦାଶ
ଓ
ଦାମୋଦର ଦାଶଙ୍କ
କରକମଳରେ 'ପିତୃଋଣ' ଉତ୍ସର୍ଗ କରୁଛି ।

ବାସନ୍ତୀ

ଇତିହାସରେ ନାମ ଓ ତାରିଖ ବ୍ୟତୀତ ତଥ୍ୟରେ ବିଶେଷ ସତ୍ୟତା ନଥାଏ, କିନ୍ତୁ ସାହିତ୍ୟରେ ନାମ ଓ ତାରିଖ କପୋଳକଳ୍ପିତ, ମାତ୍ର ତଥ୍ୟଗୁଡ଼ିକ ସତ୍ୟର ଅଧିକ ନିକଟବର୍ତ୍ତୀ । ଏ ଉକ୍ତିର ବାସ୍ତବତା ମର୍ମେ ମର୍ମେ ଅନୁଭବ କରିସାରି ସୁଦ୍ଧା ଆମେ କହୁ ସାହିତ୍ୟ କଳ୍ପନାଶ୍ରୟୀ । ସାହିତ୍ୟର ମୂଳପିଣ୍ଡ କଳ୍ପନା । ଏ ତତ୍ତ୍ୱରେ ମୋର କିନ୍ତୁ ବିଶ୍ୱାସ କମ୍ । କଳ୍ପନାକୁ ନେଇ ମୁଁ ଲେଖେ ନାହିଁ । ଅର୍ଥାତ୍ ଲେଖିପାରେ ନାହିଁ । ଯେତେବେଳେ ଏମିତି ଉଦ୍ୟମଟିଏ ମୁଁ କରିଛି, ସେ ଉଦ୍ଦେଶ୍ୟ ବ୍ୟର୍ଥ ହୋଇଛି, ମାସ ମାସ ଧରି ଲେଖାଟି ଅଧା ହେଇ ପଡ଼ିରହିଛି । ପୂରଣ ହୋଇପାରିନାହିଁ । ତାକୁ ଛାଡ଼ି ଆଉ ଗୋଟିଏ ଲେଖାରେ ହାତଦେଇଛି, ସେଇ ଜୀବନ୍ତ ଅନୁଭବକୁ ନେଇ, ଯାହା ଦିନଦିନ ଧରି ମୋତେ ପୀଡ଼ନ ଦେଇଛି, ମୋ ଅନ୍ତଃସ୍ଥଳକୁ ଦୁହିଁ ଦେଇଛି, ମନ୍ଥି ଚକଟି ପକାଇଛି । ବେଳେବେଳେ ବର୍ଷ ବର୍ଷ ଧରି ଏ ଅନୁଭବର ବାଦୁଡ଼ି ମୋ ଚେତନା ଭିତରେ ଲଟକି ମୋତେ ଅସ୍ତବ୍ୟସ୍ତ କରିଛି, ଲହୁଲୁହାଣ କରିଛି, ଭାବାଚ୍ଛନ୍ନ କରିରଖିଛି ଦୀର୍ଘକାଳ ପାଇଁ, ସେଇ ମଧୁର ଯନ୍ତ୍ରଣାରୁ ଖିଏ ଖିଏ ପ୍ରକାଶ କରି ଦେଇ ମୁଁ ଯେଉଁ ଚରମ ସାରସ୍ୱତ ପ୍ରଶାନ୍ତି ପାଇଛି, ତାର କଳାତ୍ମକ ରୂପ ହେଉଛି ମୋର ଗଳ୍ପ । ସେଇ ଅନୁଭବ ହେଉଛି ମୋ ଗଳ୍ପର ଭାବବସ୍ତୁ ।

'ପିତୃଋଣ' ଗଳ୍ପ ସଂକଳନଟିରେ ସନ୍ନିବେଶିତ ପ୍ରତ୍ୟେକ ଗଳ୍ପ ମୋ ଅନ୍ତର୍ଭେଦୀ ଅନୁଭବର ସାରବତ୍ତା । ସମାଜରେ 'ଏମିତି ସବୁ ଘଟୁଛି', 'ଘଟୁଥାଇପାରେ' ଭଳି ଅନ୍ଦାଜ କରି ମୁଁ ଲେଖିନାହିଁ । ପ୍ରିୟ ଅସତ୍ୟ ଗଳ୍ପରେ 'ବ୍ଲାଇଟେଡ୍ ଓଭମ୍'ର ଶିକାର ହୋଇଥିବା ସନ୍ତାନାକାଙ୍କ୍ଷିଣୀ ନାରୀଟିର ଛାତିଫଟା କୋହ ମୁଁ ଅତି ପାଖରୁ ଦେଖିଛି । 'ଅଭିଶପ୍ତ ଗନ୍ଧର୍ବୀ'ର ହା ହୁତାଶ ମୋତେ ଅସ୍ଥିର କରିଦେଇଛି । 'କଳଙ୍କର ଟୀକା'ର ସୁଦର୍ଶନ ଚରିତ୍ର ଭଳି ଚରିତ୍ରଟିଏ ଶୈଶବରେ ଥିଲା ମୋର ଅନ୍ତରଙ୍ଗ । ମୋ ଗାଁର କିମ୍ବଦନ୍ତୀ ବନିଯାଇଥିବା ସୁଲି ଓ ରଘୁ ଏବେ ବି ମୋ ହାତ ପାହାନ୍ତାର ଚରିତ୍ର । 'ବିବର୍ଣ୍ଣ ବସନ୍ତର ଭୋକ' ଗଳ୍ପଟି ବର୍ଷ ବର୍ଷ ଧରି ମନତଳେ ଅବଗୁମ୍ଫିତ ହୋଇଥିବା ମୋ ଅଙ୍ଗେନିଭା ଅନୁଭବ ।

'ଏକ ବାହାଘରର ଇତିବୃତ୍ତ' ଗଳ୍ପରେ ପଞ୍ଚୁଆର ଦୁଇ ଢଳଢଳ ନିରୀହ ଆଖି ଏବେବି ମୋ ହୃଦୟକୁ ବିଦୀର୍ଣ୍ଣ କରିଦିଏ । ଶଠତା, ପ୍ରତାରଣା ଓ ନିର୍ଯ୍ୟାତନାର ଶିକାର

ହୋଇଥିବା 'ବାଜେଝିଅ'ର ଚମ୍ପା ଓ 'ମୁକ୍ତି ସ୍ୱାଦ'ର ତପୁ ଭଳି ନିରୀହ ନିଷ୍କପଟ ଚରିତ୍ର ଦୁଇଟିର କରୁଣତା ମୋ ଅନ୍ତରରେ ଯନ୍ତ୍ରଣାର ଅଜସ୍ର ତୀର ବିଦ୍ଧ କରିଛି । ଏମାନଙ୍କ ପାଇଁ ଦୁଇଧାଡ଼ି ଲେଖି ଦେବାପରେ ମୁଁ ଆଶ୍ୱସ୍ତ ଅନୁଭବ କଲି ।

ତମ୍ଭନାଟଗୁରୁ ସହ ଜୀବନ ବଞ୍ଚିବାର ସ୍ୱପ୍ନ ଦେଖୁ ଦେଖୁ ଜାତିହାରି ଅଜାତିଆ ହୋଇଥିବା ବୁଟିବୁଢ଼ୀ ନାଟଗୁରୁଦ୍ୱାରା ପ୍ରତ୍ୟାଖ୍ୟାତ ହେବାପରେ ସୁଦ୍ଧା ସେଇ ହଜିଲା ପ୍ରେମକୁ ଗଣ୍ଠିଧନ କରି ତାର ନିଃସ୍ୱ ମୁହୂର୍ତ୍ତମାନଙ୍କୁ ରସସିକ୍ତ କରିଛି, ଛାଡ଼ି ଆସିଥିବା ପୁଅ କଥା ମୋ ଆଗରେ କହି ତା ଓଜନିଆ ଛାତିକୁ ହାଲ୍‌କା କରିଛି ।

ଏସବୁ ଅନୁଭବ ମୋର ଅମୂଲ୍ୟ ପୁଞ୍ଜି । ସେଇଥିପାଇଁ ମୋ ଗଳ୍ପରେ କାହାଣୀର ହଟଚମଟ ନାହିଁ । ଅତିଗୁଡ଼ିଏ ପରୀକ୍ଷା ନିରୀକ୍ଷା ଦ୍ୱାରା ଆଙ୍ଗିକର ଭୋଜବାଜିକୁ ବି ମୁଁ ପସନ୍ଦ କରେନାହିଁ । ଏସବୁ ମୋତେ ଲାଗେ ଯାନ୍ତ୍ରିକ ଯାନ୍ତ୍ରିକ । କୃତ୍ରିମ ଓ ଲୋକ ଦେଖାଣିଆ । ଯାହା କଥା ଯେଉଁମନ୍ତେ କୁହାଗଲେ ଭଲ କରି କହି ହେବ, ସେଇଭଳି ଶବ୍ଦସବୁ ଆପେ ଆପେ ମୋ ପାଖରେ ଆସି ଗହଳି କଲାଭଳି ମୁଁ ଅନୁଭବ କରିଛି । ସେଇସବୁ ଶବ୍ଦବ୍ରହ୍ମଙ୍କୁ ନେଇ ମୋ ଉଦ୍ଦେଶ୍ୟ ସାଧନରେ ମୁଁ କେତେଦୂର ସଫଳ ହୋଇଛି ସେ କଥା ମୋ ପାଠକମାନେ କହିବେ ।

ସଂକଳନସ୍ଥ ଗଳ୍ପଗୁଡ଼ିକ ଓଡ଼ିଶା ତଥା ଓଡ଼ିଆ ବାହାରର ବିଭିନ୍ନ ପ୍ରତିଷ୍ଠିତ ପତ୍ରପତ୍ରିକା ଯଥା- ଇସ୍ତାହାର, ନବପତ୍ର, ସମାରୋହ, ମହୋଦଧି, ସୁଲେଖା, ଅଭିଯାନ (କୋଲକାତା), ମଧୁଲିତା (ହାଇଦ୍ରାବାଦ୍)ରେ ପ୍ରକାଶିତ ହୋଇ ପ୍ରଚୁର ପାଠକୀୟ ଶ୍ରଦ୍ଧା ଅର୍ଜନ କରିଛି । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ପାଠକୀୟ ଶୁଭେଚ୍ଛା ଓ ସହୃଦୟତା ବହନ କରି ଆଣିଥିବା ଚିଠିଗୁଡ଼ିକ ମୋର ଆତ୍ମବିଶ୍ୱାସକୁ ଦୃଢ଼ କରିଛି ଓ ଏ କ୍ଷେତ୍ରରେ ଆଉ ପାଦେ ଆଗେଇବା ପାଇଁ ପ୍ରେରଣା ଦେଇଛି । ଏହି ଅବସରରେ ମୁଁ ସଂପୃକ୍ତ ପତ୍ରପତ୍ରିକାର ସମ୍ପାଦକ ଓ ପ୍ରକାଶକ ଏବଂ ପାଠକମାନଙ୍କୁ ସାଧୁବାଦ ଜଣାଉଛି ।

ଯେଉଁମାନଙ୍କର ସାହାଯ୍ୟ ସହଯୋଗ ଓ ତ୍ୟାଗ ବିନା ଏ ସଂକଳନ ଆଦୌ ସମ୍ଭବ ହୋଇ ନଥାନ୍ତା ସେମାନେ ହେଲେ ମୋ ପୁଅ ଇଲୁ ଓ ତା' ବାପା ଶ୍ରୀହର୍ଷ । ସେମାନଙ୍କ ଅବଦାନକୁ ମୁଁ ସ୍ମରଣ କରୁଛି ।

ଏହାଛଡ଼ା ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ବହନ କରିଥିବାରୁ ମୁଁ ସରସ୍ୱତୀ ପ୍ରକାଶନକୁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ସଂକଳନଟି ବିନ୍ଦୁଏ ହେଉପଛେ, ପାଠକଙ୍କ ହୃଦୟକୁ ଛୁଇଁ ପାରିଲେ ମୋ ଶ୍ରମ ସାର୍ଥକ ହେଲା ମନେକରିବି ।

ବାସନ୍ତୀ ମହାନ୍ତି

# ସୂଚୀପତ୍ର

| | |
|---|---|
| ପିତୃଋଣ | ୧୧ |
| ପ୍ରିୟ ଅସତ୍ୟ | ୧୮ |
| ଅଭିଶପ୍ତ ଗନ୍ଧର୍ବୀ | ୨୩ |
| ପାପ | ୩୦ |
| ଏକ ବାହାଘର ଇତିବୃତ୍ତ | ୩୯ |
| ବିବର୍ଣ୍ଣ ବସନ୍ତର ଭୋକ | ୪୫ |
| ଡମୁଣୀ | ୫୦ |
| ମହାଯାତ୍ରା | ୫୭ |
| ଦୁଇଟି କଥା କୁହା ଆଖି | ୬୩ |
| ଶାଶୁ ବୋହୂ | ୬୯ |
| ଫୁଡ୍ ପଏଜନ୍ | ୭୪ |
| କଳଙ୍କର ଟୀକା | ୮୦ |
| ବାଙ୍କେ ଝିଅ | ୮୬ |
| ମୁକ୍ତିର ସ୍ୱାଦ | ୯୩ |
| ପରକୀୟା | ୧୦୦ |
| ବୁଟି ବୁଢ଼ | ୧୧୩ |

# ପିତୃଋଣ

ଆଜି ବାପାଙ୍କର ଏକାଦଶାହ । ଦୀର୍ଘ ଦଶଦିନ ଧରି ପ୍ରତିଦିନ କିଛି ନା କିଛି କ୍ରିୟାକର୍ମ ଲାଗିରହିଛି । ଆମ ଆଠ ଭାଇଭଉଣୀଙ୍କ ବ୍ୟତୀତ ଅନ୍ୟାନ୍ୟ ବନ୍ଧୁବାନ୍ଧବ କୁଣିଆ ମୈତ୍ର ଘରେ ଭର୍ତ୍ତି ହୋଇଛନ୍ତି । ପୁରୋହିତ, ନାହାକ, ଧୋବା, ଭଣ୍ଡାରୀ ସମସ୍ତେ ତତ୍ପର । କର୍ମ ଯେମିତି ନିର୍ବିଘ୍ନରେ ସଂପନ୍ନ ହୁଏ । ବାପାଙ୍କର ଆତ୍ମା ଯେମିତି କୋଉଠି ଟିକେ ବି ଅସନ୍ତୁଷ୍ଟ ନହୁଏ । ଗତକାଲି ନିଃଶବ୍ଦ ରାତିରେ ବାପାଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ଦଶହାଣ୍ଡି ଆଜି ସକାଳ ପର୍ଯ୍ୟନ୍ତ ଗଡ଼ିଲା ନାହିଁ । ବାପା ଅଭିମାନ କରିଛନ୍ତି । ଖାଉ ନାହାଁନ୍ତି । ତାଙ୍କର କିଛି ଇଚ୍ଛା ଅପୂର୍ଣ୍ଣ ରହିଯାଇଛି । ସମସ୍ତେ ବ୍ୟସ୍ତ ହେଲେ । ଗୋଟି ଗୋଟି କରି ଯାଇ ତାଙ୍କୁ ମନେଇଲୁ । ଜ୍ଞାତ ସାରରେ ହେଉ ଅଜାଣତରେ ହେଉ ଆମେ କରିଥିବା ଦୋଷତ୍ରୁଟିକୁ କ୍ଷମା କରିଦେବା ପାଇଁ ଅଳି କଲୁ । ଦଶହାଣ୍ଡି ଗଡ଼ିଲା ।

ବାପା କେବେ କାହା ଉପରେ ରାଗିବାର ଆମେ ଦେଖିନାହୁଁ କିମ୍ବା କାହାଠାରୁ କିଛି ଚାହିଁବା ମଧ୍ୟ ଆମେ ଶୁଣିନାହୁଁ । ସାରାଜୀବନ ସେ କେବଳ ଅନ୍ୟପାଇଁ

ବଞ୍ଚିଥିଲେ । ପରିବାରର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଆପଣାର ସୁଖ ବଳି ଦେଇଥିଲେ । ଅନ୍ୟ ପରିବାରର ସୁଖ ପାଇଁ ନିଜ ପରିବାର ସୁଖ ସ୍ୱାଚ୍ଛନ୍ଦ୍ୟ ବଳି ଦେଇଥିଲେ । ତାଙ୍କ ଜୀବନର ସୌଧ ତ୍ୟାଗର ବୁନିଆଦି ଉପରେ ଠିଆ ହୋଇଥିଲା । ମାତ୍ର ଚଉଦବର୍ଷରୁ ପିତୃବିୟୋଗଜନିତ ଦାରୁଣ ଧକ୍କା ସାଙ୍ଗକୁ ଦୁଇ ବର୍ଷର ଭାଇ ଓ ତଥାପି ଦୁନିଆର ଆଲୋକ ଦେଖିବାକୁ ଅପେକ୍ଷା କରିଥିବା ଭଉଣୀର ଦାୟିତ୍ୱ ନେଉ ନେଉ ସେ ନିଜକଥା ସଂପୂର୍ଣ୍ଣ ଭୁଲି ଯାଇଥିଲେ । ତାପରେ ଆମେ ସବୁ ଆସିଲୁ । ଆମମାନଙ୍କ ଅପେକ୍ଷା ସେ ତାଙ୍କ ଭାଇ ଭଉଣୀଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ବେଶି ସଚେତନ ଥିବା ଆମେ ଅନୁଭବ କରୁଥିଲୁ ।

ଏମିତି ଭାବରେ ଦୀର୍ଘ ୯୧ବର୍ଷ କଟେଇଥିବା ବାପା ନିଜର ଅପୂର୍ଣ୍ଣ କାମନାବାସନା ପାଇଁ ଯେ ଅଭିମାନ କରିପାରନ୍ତି ସେ କଥା କେହି ବିଶ୍ୱାସ କରୁନଥିଲେ । କିନ୍ତୁ ମୁଁ ଠିକ୍ ଅନୁଭବ କରୁଥିଲି ବାପାଙ୍କର ଅଭିମାନ । ଏକ ଗଭୀର ଅଶ୍ୱସ୍ତି ଓ ଅପରାଧ ବୋଧ ଭିତରେ ମୁଁ ଏତେଟିକିଏ ହେଇ ଯାଉଥିଲି । ହାୟ ସମୟର ଚକ୍ର ଆଉ ଟିକେ ପଛକୁ ଘୂରିଯାଆନ୍ତି କି ? କିମ୍ବା ବାପା ଆଉ କିଛିଦିନ ବଞ୍ଚିଯାଇଥାନ୍ତେ କି ! କେଜାଣି ଅବା ମୋ ଉପରେ ଥିବା ତାଙ୍କ ଭରସାକୁ ଉପଯୁକ୍ତ ମର୍ଯ୍ୟାଦା ଦେଇ ପାରିଥା'ନ୍ତି । ବାପା ବଞ୍ଚିଥିଲାବେଳେ ମୁଁ ଯେଉଁ କାର୍ଯ୍ୟକୁ କୌଣସି ଉଦ୍ଦେଶ୍ୟ ନଥାଇ ଅବହେଳା କରି ଆସୁଥିଲି, ଏବେ ମନେ ହେଉଛି, ତାହାହିଁ ଥିଲା ମୋ ଜୀବନର ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ କାର୍ଯ୍ୟ । ଆମ ଏତେ ଭାଇଭଉଣୀଙ୍କ ଭିତରେ ସେ ମୋ ବ୍ୟତୀତ କାହା ପାଖରେ ଏଇ ଇଚ୍ଛାଟିକକ ପ୍ରକଟ କରି ନଥିଲେ । ଇଚ୍ଛା ନୁହେଁତ, ମୋ ପୁଅ ଇଲୁଭଳି ମୋ ପାଖରେ ସେ ଅଳିଟିଏ ହିଁ କରିଥିଲେ । ମୋ ଉପରେ ତାଙ୍କର ଭରସା ଥିଲା । ମୁଁ କିନ୍ତୁ ସେ ବଞ୍ଚିଥିବା ପର୍ଯ୍ୟନ୍ତ ସେ ଭରସାର ମୂଲ୍ୟ ଦେଇ ପାରିଲି ନାହିଁ । ମୋ ସ୍ୱାର୍ଥ, ମୋ ସଂସାର ମୋ ଘରକରଣା ଭିତରେ ପ୍ରସଙ୍ଗଟିକୁ ମୁଁ ଆଡ଼େଇ ଆଡ଼େଇ ଆସିଲି ଆଉ ଆଜି ଯେତେବେଳେ ସେଥିପାଇଁ ମୁଁ ତତ୍ପର ହୋଇପଡ଼ିଲି ସେତେବେଳେ ସେ ଆଉ ନାହାଁନ୍ତି । ସେଇଥିପାଇଁ ସେ ମୋ ଉପରେ ଅଭିମାନ କଲେ କି ?

ମୁଁ କିନ୍ତୁ ସ୍ଥିର ନିଶ୍ଚିନ୍ତ ଥିଲି ସେ ମୋ ଉପରେ ହିଁ ଅଭିମାନ କରିଛନ୍ତି । ମୁଁ ତାଙ୍କ ବିଶ୍ୱାସ ଓ ଭାବପ୍ରବଣତାକୁ ଆଘାତ ଦେଇଛି । ଅନ୍ୟମାନେ ତାଙ୍କ କ୍ରିୟା କର୍ମରେ କିଛି ତ୍ରୁଟି ହେତୁ ଦଶହାଣ୍ଡି ନଗଡ଼ିବା କଥା ଚିନ୍ତା କଲାବେଳକୁ ମୁଁ ଅନ୍ୟଥା ଚିନ୍ତା କରୁଥିଲି । ମୁଁ ଜାଣିଥିଲି ବାପା ଏସବୁ କ୍ରିୟା କର୍ମର ଲୌକିକତାକୁ ଆଦୌ ବିଶ୍ୱାସ କରନ୍ତି ନାହିଁ ।

ମନେପଡ଼ିଲା ମୁଁ ସେତେବେଳେ ପଢୁଥାଏ ସପ୍ତମ ଶ୍ରେଣୀରେ । ମୁଁ ଅତି ଭଲପାଉଥିବା ମୋର ଜଣେ ଆତ୍ମୀୟଙ୍କ ଅକସ୍ମାତ୍ ମୃତ୍ୟୁ ମୋତେ ଏମିତି ଆଘାତ ଦେଇଥିଲା ଯେ ମୁଁ ମୋର ମାନସିକ ଭାରସାମ୍ୟ ହରେଇ ବସୁଥିଲି । ସେଇ ପରଲୋକଗତ ଆତ୍ମୀୟଙ୍କ ପ୍ରେତାତ୍ମା ମୋହବଶତଃ ମୋତେ ଗ୍ରାସ କରିଛି ଓ ସେଥିପାଇଁ ଝଡ଼ାଫୁଙ୍କା, ଗୁଣୀଟୁଣୀ ଆଦି କିଛି ଉପଚାର ଆବଶ୍ୟକ ବୋଲି ସମସ୍ତେ ମତଦେଲେ । ବାପା କିନ୍ତୁ ସେଥିପ୍ରତି ଆଦୌ କର୍ଣ୍ଣପାତ ନକରି କିମ୍ବା କୌଣସି ମାନସିକ ଚିକିତ୍ସକଙ୍କର ସହାୟତା ନନେଇ ଶ୍ରୀମଦ୍ ଭାଗବତ ଗୀତାର ସାଂଖ୍ୟ ଯୋଗକୁ ମୋ ପାଇଁ ଅବ୍ୟର୍ଥ ଔଷଧ ବୋଲି ଗ୍ରହଣ କରିନେଇଥିଲେ । ପ୍ରତିଦିନ ସକାଳ ଓ ସଂଧ୍ୟାରେ ମୁଁ ମୂଳ ସଂସ୍କୃତ ଶ୍ଲୋକ ଗୁଡ଼ିକୁ ଆବୃତ୍ତି କରୁଥିଲି ଓ ସେ ମୋତେ ବୁଝଉଥିଲେ । କିଛିଦିନ ପରେ ମୁଁ ଧୀରେ ଧୀରେ ସଂପୂର୍ଣ୍ଣ ସୁସ୍ଥ ହୋଇ ଉଠିଲି । ସେତେବେଳେ ଏଇ ଗୀତା ଅଧ୍ୟୟନ ମୋତେ ଅତ୍ୟନ୍ତ କ୍ଲାନ୍ତିଦାୟକ ବୋଧ ହେଉଥିଲେ ବି ପରିଣତ ବୟସରେ ମୁଁ ଯେତେବେଳେ ଏହାର ପ୍ରାସଙ୍ଗିକତା ହୃଦ୍‌ବୋଧ କଲି ବାପାଙ୍କ ପ୍ରତି ଭକ୍ତି ଓ ଶ୍ରଦ୍ଧାରେ ମୋ ମୁଣ୍ଡ ନଇଁ ଆସିଲା ।

ମୁଁ ଅନୁଭବ କରୁଥିଲି ଅନ୍ତ୍ୟେଷ୍ଟି କ୍ରିୟାକର୍ମଜନିତ ଦୋଷତ୍ରୁଟି ପାଇଁ ନୁହେଁ, ବାପା ମୋ ଉପରେ ରାଗିଛନ୍ତି । ମୋ ଅପରାଧ ଧର୍ତ୍ତବ୍ୟ ଭଳି ମନେହେଲା । ଦୁଃଖ ଅନୁଶୋଚନା ଅବଶୋଷ ଓ ପଶ୍ଚାତ୍ତାପ ସବୁ ମିଶି ମୋ ଭିତରେ ବିସ୍ଫୋରଣଟିଏ ସୃଷ୍ଟି କରିଦେଲେ ଯେମିତି । ମୁହଁରେ ଦୋଷ ସ୍ୱୀକାର କରି କିଛି କହିବାପାଇଁ ମୋର ଆଉ ଧୈର୍ଯ୍ୟ ନଥିଲା । ହଠାତ୍ ଅସହାୟ ହେଇ ଛୋଟ ଛୁଆଟିଏ ଭଳି ମୁଁ ରଡ଼ିକରି କାନ୍ଦି ଉଠିଲି । ଯେମିତି ସାନବେଳେ ବାପାଙ୍କ ପାଖରେ ଦୋଷଟିଏ କରି କିଛି ଶାସ୍ତି ପାଇବା ଆଗରୁ ପାଟିକରି କାନ୍ଦିଉଠୁଥିଲି । ଶୈଶବରେ ଯେତେ ଦୋଷ ଦୁଷ୍ଟାମି କଲେ ବି କେବେ ଆମ ଦେହରେ ଆଙ୍ଗୁଳିଟିପ ଛୁଇଁ ନଥିବା ବାପା ଏବେ ଆସି ମୋ କାନଟାକୁ ମୋଡ଼ି ଦିଅନ୍ତେ କି ! ମୋ ସବୁ ହା ହୁତାଶର ଅନ୍ତ ହେଇଯା'ନ୍ତା । ଜନ୍ମ ଜନ୍ମାନ୍ତର ପାଇଁ ପୁଞ୍ଜିଭୂତ ହେଇ ରହିଥିବା ପଶ୍ଚାତ୍ତାପ, ଦୁଃଖ ଯନ୍ତ୍ରଣା ଓ ବେଦନାବୋଧର ପରିସମାପ୍ତି ଘଟନ୍ତା । ତାଙ୍କ ଛାତିରେ ମୁଣ୍ଡ ରଖି ମୋ ଅପାରଗପଣିଆକୁ ତାଙ୍କ ପାଦତଳେ ସମର୍ପି ଦେଇ ମୁଁ କ୍ଷମା ମାଗିନିଅନ୍ତି । ଏଇ ଦଶହାଣ୍ଡି ପାଖରେ ମୁଣ୍ଡ ପିଟିପିଟି ବସୁଧାକୁ ଦ୍ୱିଧା ବିଭକ୍ତ କରିଦେଲେ ବି, କୋହ ଓ ଆର୍ତ୍ତ ଚିତ୍କାରରେ ଆକାଶର ବକ୍ଷଟାକୁ ବିଦୀର୍ଣ୍ଣ କରିଦେଲେ ବି ବାପା ଆଉ ଆସିବେ ନାହିଁ । ଏହାହିଁ ସତ୍ୟ । ଏ ସତ୍ୟକୁ ସ୍ୱୀକାର କରିବାକୁ ପଡ଼ିବ । ତାହା ଯେତେ ନିଷ୍ଠୁର ହେଉ ନା କାହିଁକି ।

ସେ ସତ୍ୟକୁ ସମସ୍ତେ ମାନିନେଇଥିଲେ । କିନ୍ତୁ ଏକା ପାରୁନଥିଲି ମୁଁ । ତାଙ୍କ ଜୀବଦ୍ଦଶାରେ ତାଙ୍କ ସ୍ୱପ୍ନକୁ ସାକାର କରି ତାଙ୍କ ଲେଖାଗୁଡ଼ିକର ଗୋଟିଏ ପ୍ରକାଶିତ ପୁସ୍ତକ ମୁଁ ତାଙ୍କ ପାଦତଳେ ସମର୍ପି ପାରିଲି ନାହିଁ । ଜୀବନସାରା ସେ ଅନେକ ଲେଖିଥିଲେ । ତାଙ୍କ ଅବସର ସମୟ ଲେଖିବା ଓ ପଢ଼ିବା ଛଡ଼ା ଅନ୍ୟ କୌଣସିରେ ବ୍ୟୟକରିବା ମୁଁ ଦେଖିନି । ତାଙ୍କ ଗଦା ଗଦା ଲେଖା ସଂପର୍କରେ କେହି କିଛି ମନ୍ତବ୍ୟ ଦେଲେ ସେ କହନ୍ତି, ମୁଁ ଲେଖୁଛି– ମୋ ଅଧ୍ୟାପିକା ଝିଅ ଛାପିବ । ଜୀବନରେ ତାଙ୍କର ଅନ୍ୟ କିଛି ପାର୍ଥିବ କାମନା ନଥିଲା ସତ କିନ୍ତୁ ତାଙ୍କ ପାଣ୍ଡୁଲିପି ଗୁଡ଼ିକର ଗୋଟିଏ ମୁଦ୍ରଣ ରୂପ ଦେଖିବାର ତୀବ୍ର ଅଭିଳାଷ ଥିଲା ।

ବିଶ୍ୱବିଦ୍ୟାଳୟ ଶିକ୍ଷା ସମାପ୍ତି ପରେ ତାଙ୍କରି ସୁକୃତରୁ ଉତ୍ତରାଧିକାର ସୂତ୍ରରେ ପାଇଥିବା ଲେଖାଲେଖି ପ୍ରତି ମୋର କିଛି ସ୍ପୃହା ଜାଗ୍ରତ ହେଲା । ସମସାମୟିକ ପତ୍ରପତ୍ରିକାରେ ବେଶ୍ ପାଠକୀୟ ଶ୍ରଦ୍ଧା ବି ଅର୍ଜନ କଲି । ବନ୍ଧୁମାନେ ଅନୁରୋଧ କଲେ ସଂକଳନଟିଏ କରିବାକୁ । ଜଣେ ସହୃଦୟ ପ୍ରକାଶକ ବି ଆଗେଇ ଆସିଲେ ଏହାର ପ୍ରକାଶନ ଦାୟିତ୍ୱ ବହନ କରିବାପାଇଁ । ସୁଯୋଗ ହାତଛଡ଼ା କଲି ନାହିଁ । ମୋ ଅବଚେତନରେ ବାପାଙ୍କ ଲେଖା ଛାପିବାର ପୀଡ଼ନ ଅନୁଭବ କଲେ ବି ମୁଁ ବିବେକ ବିରୋଧ କାମଟିଏ କରିବସିଲି । ତାଙ୍କ ଲେଖା ପୁରୁଣା କାଳିଆ, ଯୁଗୋପଯୋଗୀ ନୁହେଁ ପଇସାର ଅଯଥା ଅପଚୟ ଏମିତି କିଛି ମିଛ ଯୁକ୍ତି ବାଢ଼ି ମୁଁ ଆତ୍ମ ପ୍ରତାରଣା କଲି ଓ ସଜ୍ଞାନ ଚିତ୍ତରେ ସେ ସଂପର୍କରେ ନିର୍ଲିପ୍ତ ରହିଲି । ପିତୃଭକ୍ତିର ଚରମ ନିଦର୍ଶନ ଦର୍ଶେଇ ମୋ ବହିଟିକୁ ତାଙ୍କୁ ଉତ୍ସର୍ଗ କରିଦେଇ କର୍ତ୍ତବ୍ୟ ଶେଷ ହୋଇଗଲା ବୋଲି ବିଚାରିଲି ।

ଯେଉଁଦିନ ମୋ ଗଳ୍ପ ସଂକଳନଟିର ମୁଦ୍ରଣ ରୂପ ମୁଁ ତାଙ୍କ ହାତରେ ଅର୍ପଣ କରି ଆଶୀର୍ବାଦ ଭିକ୍ଷାକଲି ସେ ଆନନ୍ଦରେ ଅଧିର ହୋଇପଡ଼ିଲେ । ତାଙ୍କର ଅଧୁରା ସ୍ୱପ୍ନ ସାକାର ହୋଇଛି ବୋଲି ଭାବିଲେ । ବହିଟିକୁ ଦୁଇ ହାତରେ ଆଉଁସି ମୁଣ୍ଡରେ ମାରିଲେ । ସେତେବେଳକୁ ତାଙ୍କ ଦୃଷ୍ଟି ଶକ୍ତି ଦୁର୍ବଳ ହେଇଯାଇଥିବା ହେତୁ ପଢ଼ିବାର ଶକ୍ତି ଲୋପ ପାଇଥିଲା । ସାନଭାଇ ଭୂମିକାଟି ପଢ଼ି ତାଙ୍କୁ ଶୁଣେଇ ଦେଲା । ସେଥିରେ ତାଙ୍କ ବିଷୟରେ ଦୁଇଧାଡ଼ି ଲେଖା ଶୁଣି ତାଙ୍କ ମୁଖମଣ୍ଡଳରେ ପରିତୃପ୍ତିର ଏକ ଆଭା ଖେଳି ଯାଉଥିବାର ମୁଁ ଦୃଷ୍ଟିତୋଳି ଦେଖିଲି । ମୋ କପାଳ ସ୍ପର୍ଶ କରି ସେ ଆତ୍ମତୃପ୍ତିର ହସଟିକେ ହସିଲେ । ତାପରେ ଟିକେ ରହି ଧୀର କଣ୍ଠରେ କହିଲେ– ଆରେ ! ମୋ ଲେଖାଗୁଡ଼ାକ ତ ଅନେକ ନଷ୍ଟ ହୋଇଗଲା । କିଛି ଉଇ ଖାଇଗଲେ, ଆଉ କିଛି

ମହାବାତ୍ୟାରେ ନଷ୍ଟ ହୋଇଗଲା । ତଥାପି ଆହୁରି କିଛି ବଞ୍ଚିଛି । ସେଥିରୁ ଖଣ୍ଡେ ମୁଁ ବଞ୍ଚି ଥାଉ ଥାଉ କରି ଦେଲୁନି ? କେତେ ପଇସା ପଡ଼ିବ ?

ହଠାତ୍ କୌଣସି ନିଷିଦ୍ଧ ପାପଟିଏ କରିଥିବା ଭଳି ମୁଁ ସାଙ୍କୁଡ଼ି ଗଲି । ମୋର ସ୍ପର୍ଦ୍ଧା, ମୋର ଆତ୍ମପ୍ରତ୍ୟୟ ମୋ ଅସ୍ମିତା ସବୁ ଭାଙ୍ଗି ଚୂର୍‌ମାର୍ ହୋଇଗଲେ । ମୋର ବିବେକ ବୋଧ ମୋତେ ଲହୁଲୁହାଣ କଲା । ମୁଁ ଆତ୍ମରକ୍ଷା କରିବାକୁ କୌଣସି ଉପାୟ ନପାଇ ହଠାତ୍ କହି ପକେଇଲି– ହଁ ବାପା ! ମୁଁ ଏଇ ପ୍ରକାଶକଙ୍କ ସହ ତମ ବହି ସଂପର୍କରେ କଥା ହେଇଚି । ଯାହା ଲାଗୁପଛେ, ମୋର ଗୋଟିଏ ଏରିଅର୍ ଟଙ୍କା ମିଳିବାର ଅଛ, ସେଇଥିରେ କରିନେବି ।

ସରଳ ବିଶ୍ୱାସୀ ବାପା ମୋତେ ବିଶ୍ୱାସ କରି ନିରାସକ୍ତ କଣ୍ଠରେ କହିଲେ ହଁ ଯାହା କରୁଛୁ ଟିକେ ଶୀଘ୍ର କର, ପାଚିଲା ପତ୍ର । କେତେବେଳେ କୋଉ କଥା ।

ଫେରିଲାବେଳେ ଆଟୁ ଉପରେ ପୁଟୁଳି ବନ୍ଧା ହେଇ ରହିଥିବା ତାଙ୍କ ଲେଖାରୁ କିଛି ସଂଗ୍ରହ କରି ଧରିଆସିଲି । ଏଡିଟିଂ କରି ପ୍ରକାଶକଙ୍କୁ ଦେବିଦେବି ବୋଲି ହେଇପାରିଲା ନାହିଁ । ଏରିଅର୍ ଟଙ୍କା ମିଳିଲା । ପଇସାଟା କେଉଁ ଦିଗରେ ବିନିଯୋଗ କଲେ ସେଥିରୁ ଅଧିକ ଉପାଦେୟତା ମିଳିବ, ସେ କଥା ତଉଲୁ ତଉଲୁ ଟଙ୍କାତକ ଅନ୍ୟ ଦିଗରେ ଖର୍ଚ୍ଚ ହୋଇଗଲା । ମୋ ବହି ଥାକରେ ତାଙ୍କ ପାଣ୍ଡୁଲିପିଟା ସେମିତି ଅବହେଳିତ ଓ ଅସହାୟ ହୋଇ ପଡ଼ିରହିଲା ।

ସେଦିନ ସାନଭାଇ ପାଖରୁ ଫୋନ୍‌ରେ ବାପାଙ୍କ ଦେହ ଅତିଶୟ ଖରାପ ହେବା ଖବରପାଇ ବାହାରିଆସିଲା ବେଳକୁ ମୋ ଅଲକ୍ଷ୍ୟରେ ଆଖି ଦିଇଟା ଟାଣି ହୋଇଗଲା ଥାକ ଉପରେ ଅଳନ୍ଧୁ ଜମିଥିବା ପାଣ୍ଡୁଲିପି ଆଡ଼େ । ମୋତେ ଲାଗିଲା ବାପା ଯେମିତି ତାଙ୍କ ଉଦାସିଆ ଆଖିରେ ମୋତେ ଚାହିଁ କହୁଛନ୍ତି ମୋ କଥା ବୁଝିଲୁନି ? ଗଭୀର ଅଶ୍ୱସ୍ତି ବୋଧରେ ମୋ ଛାତି ଭିତରଟା ମଛି ଚକଟି ହୋଇଗଲା । ଏକ ଅବ୍ୟକ୍ତ ବେଦନାବୋଧରେ ମୁଁ ଆକ୍ତାମାକ୍ତା ହୋଇଗଲି । ପାଣ୍ଡୁଲିପିଟାକୁ ଉଠେଇ ଆଣି ଶାଢ଼ୀ କାନିରେ ପୋଛି ଯଥା ସ୍ଥାନରେ ରଖି ଦେଇ ଭଗବାନଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ମନେ ମନେ କହିଲି– ହେ ଭଗବାନ୍ ମୋ ବାପାଙ୍କର କିଛି ହେଇ ନଥାଉ । ତାଙ୍କୁ ଟକ୍କ ଉହାଡ଼ କରି ରଖ ।

କିନ୍ତୁ ବାପାଙ୍କୁ ଶେଷ ଦେଖା କରିବାର ସୁକୃତ ଟିକକ ବୋଧହୁଏ ମୋର ନଥିଲା । ମୁଁ ପହଞ୍ଚିଲା ବେଳକୁ ସବୁ ସରିଯାଇଥିଲା, ବାପାଙ୍କୁ ହରେଇବାଜନିତ ବେଦନାବୋଧ ମୋର ଯେତିକି ନଥିଲା ତାଙ୍କ ଶେଷ ଇଚ୍ଛା ପୂର୍ଣ୍ଣ କରିନପାରିବାର ଅବଶୋଷ

ମୋତେ ଅତିଷ୍ଠ କରିଦେଲା । ମୋ ହୃଦୟଟା ଶତଧା ବିଦୀର୍ଣ୍ଣ ହେଇଯିବା ଭଳି ମୁଁ ଅନୁଭବ କଲି । ଏକ ଅବ୍ୟକ୍ତ ବ୍ୟାକୁଳତା ମୋ ସମଗ୍ରସତ୍ତାକୁ ଆଚ୍ଛନ୍ନ କରି ରଖିଲା ।

ଭାଇମାନଙ୍କ ସହ ପରାମର୍ଶ କଲି । ଦ୍ୱିଗୁଣ ଅର୍ଥ ବ୍ୟୟିତ ହେଉ ପଛେ ୧୦/୧୧ ଦିନ ଭିତରେ ବହିଟି ସଂପୂର୍ଣ୍ଣ ପ୍ରକାଶିତ ହୋଇପାରିବ । ଏକାଦଶାହ ବ୍ରାହ୍ମଣ ଭୋଜନବେଳେ ବ୍ରାହ୍ମଣ ଓ ଉପସ୍ଥିତ ଭଦ୍ରବ୍ୟକ୍ତିଙ୍କ ଭିତରେ ବହିଟି ବଣ୍ଟାଗଲେ ହୁଏତ ବାପାଙ୍କର ଅତୃପ୍ତ ଆତ୍ମା ଶାନ୍ତିପାଇବ । ମୋର ଅନ୍ତର୍ଦାହ ବି କିଛି ପରିମାଣରେ ଉପଶମ ହୋଇପାରିବ । ଯଥା ସମୟରେ ବହି ପ୍ରେସ୍‌ରୁ ଆସି ବାପାଙ୍କ ରୁମ୍‌ରେ ଗଦା ହେଇଗଲା ।

ବ୍ରାହ୍ମଣ ଭୋଜନୀ ପରେ ଗଳବସ୍ତ୍ର ହୋଇ ବାପାଙ୍କ ଆତ୍ମାର ସଦ୍‌ଗତି କାମନା କରି ଭାଇମାନେ ବ୍ରାହ୍ମଣମାନଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ କରୁଥିଲେ । ତାପରେ ଦକ୍ଷିଣା ସହ ବାପାଙ୍କ ଫଟୋଥିବା ପ୍ରକାଶିତ ବହି ଖଣ୍ଡେ ସେମାନଙ୍କ ହାତରେ ଧରେଇ ଦେଉଥିଲେ । ନିମନ୍ତ୍ରିତ ଅନ୍ୟାନ୍ୟ ଭଦ୍ରବ୍ୟକ୍ତି କେହିବି ବାଦ୍ ପଡୁନଥିଲେ । ବାପାଙ୍କର ଜୀବନବ୍ୟାପୀ ସ୍ୱପ୍ନ ତାଙ୍କ ଶେଷ କୃତ୍ୟରେ ହିଁ ସମ୍ଭବ ହୋଇପାରିଲା । କେମିତି କେଜାଣି ମୋର ସକଳ ସତର୍କତା ସତ୍ତ୍ୱେ ବହିଟିର ମୁଦ୍ରଣ ଖର୍ଚ୍ଚ ଯେ ମୁଁ ବହନ କରିଥିଲି ତାହା ବାହାରେ ପ୍ରଚାର ହୋଇସାରିଥିଲା । ବାପାଙ୍କର ଏକମାତ୍ର ଅଥଚ ଶେଷ ଇଚ୍ଛା ମୋ ଦ୍ୱାରା ସଫଳ ହେଲା । ମୁଁ ତାଙ୍କର ଯୋଗ୍ୟ ଝିଅ, ଏମିତି କିଛି ଚର୍ଚ୍ଚା ମୋ କାନରେ ପଡୁଥିଲା ।

ମତେ କିନ୍ତୁ ସେସବୁ ନିୟତିର ନିଷ୍ଠୁର ପରିହାସ ଭଳି ମନେ ହେଉଥିଲା । ମୋ ଅପାରଗପଣ ପ୍ରତି ଏସବୁ ଧିକ୍କାର ଭଳି ଲାଗୁଥିଲା । କ୍ରିୟାକର୍ମ, ଭୋଜିଭାତ, ଫଟୋଚିତ୍ର ଉତ୍ତୋଳନ, ବ୍ରାହ୍ମଣମାନଙ୍କ ସନ୍ତୁଷ୍ଟି ପ୍ରକ୍ରିୟାରେ ସମସ୍ତେ ବ୍ୟଗ୍ର ଥିବାବେଳେ ମୁଁ ଗୋଟିଏ କୋଣରେ ଠିଆ ହୋଇ ଅନୁଭବ କରୁଥିଲି, ବାପାଙ୍କର ଆତ୍ମା ଏସବୁ ଲୌକିକତାର ଧାର ଧାରୁ ନଥିବ । ସ୍ଥୂଳ ଶରୀର ତ୍ୟାଗ କଲାପରେ ପାର୍ଥିବ ଜଗତର କୌଣସି ଆଶା ଆକାଙ୍କ୍ଷା ଓ ଆସକ୍ତି ସହ ଆତ୍ମା ଆଦୌ ଜଡ଼ିତ ହୋଇନଥାଏ । ଭୌତିକ ଜଗତର କୌଣସି କ୍ରିୟାକର୍ମ ତାକୁ ସ୍ପର୍ଶ କରିପାରେ ନାହିଁ । ସେ ଅଚିନ୍ତ୍ୟ, ଅକ୍ଳେଶ ଓ ଅବିକାର୍ଯ୍ୟ (ବିକାର ରହିତ) ହୋଇପଡ଼େ । ଏକଥା ଗୀତା ତତ୍ତ୍ୱକୁ ଖିନ୍‌ଭିନ୍ କରି ଆତ୍ମସ୍ଥ କରିଥିବା ଓ ସେଥିରେ ଆସ୍ଥା ପ୍ରକଟ କରିଥିବା ତାଙ୍କରି ମୁହଁରୁ ଶୈଶବରୁ ମୁଁ ଶୁଣି ଆସୁଥିଲି ଏବଂ ଏହା ମୋ ଚୈତ୍ୟ ସତ୍ତାକୁ ଗଭୀର ଭାବରେ ପ୍ରଭାବିତ ସୁଦ୍ଧା କରିଥିଲା । ତାଙ୍କ ଆତ୍ମାର ଶାନ୍ତି ତୃପ୍ତି ଓ ସଦ୍‌ଗତି ପାଇଁ ଆମମାନଙ୍କର ଏ ବିକଳ ପ୍ରୟାସରେ ମୋର ପ୍ରତ୍ୟୟ ଆସୁନଥିଲା । ତଥାପି ମୁଁ ଭଗବାନଙ୍କ ଉଦ୍ଦେଶ୍ୟରେ ହାତ ଟେକି କହିଲି–

ଗୀତା ବର୍ଣ୍ଣିତ ସାଂଖ୍ୟଯୋଗର ସକଳ ଜନ୍ମମୃତ୍ୟୁ ତତ୍ତ୍ୱ ପଛେ ମୁହୂର୍ତ୍ତକ ପାଇଁ ମିଥ୍ୟା ହେଇଯାଉ । ଆତ୍ମା ପରମାତ୍ମା ସଂପର୍କୀୟ ସକଳ ଶାସ୍ତ୍ରସିଦ୍ଧି ପଛେ ମୁହୂର୍ତ୍ତକ ପାଇଁ ଅସିଦ୍ଧ ହେଇଯାଉ, ମାତ୍ର କ୍ଷଣକ ପାଇଁ ମୋ ବାପାଙ୍କ ଆତ୍ମା ପ୍ରକଟିତ ହୋଇ ଯାଆନ୍ତା କି ? ତାଙ୍କ ସ୍ନେହସିକ୍ତ ଉଦାର ଦୃଷ୍ଟିତୋଳି ସେ ମତେ କହନ୍ତେ କି–

ମୁଁ କୁଆଡ଼େ ଯାଇନି ରେ ! ତମରିମାନଙ୍କ ଭିତରେ ଅଛି । ଏ ବହିର ପ୍ରତ୍ୟେକ ପୃଷ୍ଠାରେ ପ୍ରତ୍ୟେକ ପରିଚ୍ଛେଦରେ ପ୍ରତ୍ୟେକ ବାକ୍ୟ ଶବ୍ଦ ଓ ଅକ୍ଷର ଭିତରେ ମୁଁ ଅଛି । ଏହାକୁ ସ୍ପର୍ଶ କଲେ ତମେମାନେ ମତେ ହିଁ ସ୍ପର୍ଶ କରିବ । କେବଳ ମତେ ।

ଏମିତି କିଛି ଭାବୁ ଭାବୁ ଅନୁଭବ କଲି ମୁଁ ଯେମିତି ଏ ବାସ୍ତବ ଜଗତ ଭିତରେ ନାହିଁ । ଏ ଭୋଜିଭାତ ଗହଳ ଚହଳ ଓ ହୋ ହଲ୍ଲାକୁ ଅତିକ୍ରମ କରି ମୋ ଚୈତ୍ୟ ସତ୍ତା ଅନ୍ତରୀକ୍ଷରେ ଲୀନ ହେଇଯାଉଚି । ନିଜକୁ ମୁଁ କେଉଁ ଏକ ଅତୀନ୍ଦ୍ରୀୟ ଜଗତରେ ଆବିଷ୍କାର କରୁଚି । ଚତୁର୍ଦ୍ଦିଗରେ ଅଣଚାଶ ପବନର ସୁ ସୁ ଶବ୍ଦ । ମୋ ଚତୁପାର୍ଶ୍ୱ ନିରନ୍ଧ୍ର ଅନ୍ଧକାର ମୋ ଆଖି ଦୁଇଟା ଆପେ ମୁଦି ହେଇଆସିଲା, ତାପରେ ସବୁ ନିସ୍ତବ୍ଧ ନିରବ । ଏକ କ୍ଷୁଦ୍ର ଅଥଚ ତେଜୋମୟ ଆଲୋକ ଶିଖାରେ ମୁଁ ଝଲସି ଉଠିଲି । ତାପରେ ଏକ ଶାନ୍ତ ସ୍ନିଗ୍ଧ ଓ ମମତାସିକ୍ତ ହାତ ମୋ କପାଳ ସ୍ପର୍ଶ କଲା । ଅବିକଳ ମୋ ବାପାଙ୍କ ସ୍ପର୍ଶ ପରି । ମୁଁ ଉଲ୍ଲସିତ ହେଇ ଉଠିଲି କ୍ଷଣକ ପାଇଁ । କେତେ ସମୟ ମୁଁ ଏମିତି ଠିଆ ହେଇଛି କେଜାଣି, ହଠାତ୍ କାହାର କଣ୍ଠସ୍ୱରରେ ମୁଁ ବାହ୍ୟ ଜ୍ଞାନ ଫେରି ପାଇଲି ।

ଅପା ! ଏମିତି ଠିଆ ଠିଆ ଶୋଇପଡ଼ିଲ ନା କ'ଣ କାଲି ବେଶି ରାତି ପର୍ଯ୍ୟନ୍ତ ତମେ ଅନିଦ୍ରା ଥିଲ ତ ! ଚାଲ ଘରେ ଶୋଇ ପଡ଼ିବ ।

ଆଖି ମେଲି ଦେଖିଲି ମୋ ସାନଭାଇର ସ୍ତ୍ରୀ । ସେଇ ବାସ୍ତବ ଜଗତ । ଭୋଜିଭାତର ମହୋତ୍ସବ । ଗହଳ ଚହଳ ଓ ବ୍ୟସ୍ତତା । ମତେ ଏସବୁ ଲାଗୁଥିଲା ତୁଚ୍ଛ, ଅଳୀକ, ପିଲା ଖେଳ ପରି ।

ଠିକ୍ ଯେମିତି ଶୈଶବରେ ମୁଁ ଖେଳୁଥିଲି ବାଲିଘର କରି । ମିଛିମିଛିକା କଣ୍ଢେଇ ମଣିଷ ଆଉ ଗୋଡ଼ିବାଲିରେ ମିଛି ମିଛିକା ଭୋଜିଭାତ କରି ।



## ପ୍ରିୟ ଅସତ୍ୟ

ବୋଉ ପଠେଇଥିବା ଚିଠି ଓ ସାଦଭାର ବାବଦରେ ସୁବ୍ରତାର ବାପା ପଠେଇଥିବା ଏକ ହଜାର ଟଙ୍କାର ମନିଅର୍ଡର ଗୋଟିଏ ଦିନରେ ଆସି ପହଞ୍ଚିଲା ।

ବୋଉ ଲେଖିଥିଲା, ବୋହୂଟାର ପୋଢୁଆଁ ପୋଖତି । ତା'ପୁଣି ବାହାଘରର ଦଶ ବରଷ ପରେ । ଜଗି ରଖି ଚଳିବାକୁ କହିବୁ । ଏମିତି ଅବସ୍ଥାରେ ପିଲା ଜନ୍ମ ହେଲା ବେଳକୁ ସମସ୍ୟା ହୋଇପାରେ ବୋଲି କେହି କେହି କହୁଛନ୍ତି । ମତେ ଭାରି ଡର ମାଡୁଛିରେ । ବୋହୂକୁ ମୋର ମୋ ପାଖକୁ ନେଇ ଆସନ୍ତି ଯେ ଏ ନିଉଛୁଣା ଗାଁଟାରେ ତ ଡାକ୍ତରଖାନାଟିଏ ନାହିଁ । ଭଲମନ୍ଦକୁ ବଳ ପାଇବ ନାହିଁ । ତୁ ହେଳା କରିବୁନି । ରୀତିମତ ଡାକ୍ତର ଦେଖେଇବୁ । ମୁଁ ଗାଁ ଠାକୁରାଣୀଙ୍କୁ କାଳିଆ ବୋଦା ସହିଛି । ଭଲରେ ଭଲରେ ମୋ ବୋହୂ ଉଦ୍ଧାର ହେଇଗଲେ ତମେମାନେ ଗାଁକୁ ଆସି ସେ କାମ ଛିଣ୍ଡେଇ ଯିବ । ପାଣି ହାଣ୍ଡି ଛୁଆଟାକୁ ଧରି ପାଣି କାଦୁଅରେ ଗାଁକୁ ଆସିବ ନାହିଁ । ଏକୋଇଶିଆ ଭୋଜିଟା ସେଇଠି ସାରିଦବୁ । କିନ୍ତୁ ବର୍ଷ ପୂରାଣିକୁ ଗାଁରେ ଭୋଜୀଭାତ ନଦେଲେ ନହୁଏ । ଏତେ ବର୍ଷ ପରେ ମୋ କୂଳକୁ ବିହନଟିଏ ଆସୁଛି, ଗାଁବାଲା କ'ଣ ଛାଡ଼ିବେ ?

ବଂଶରକ୍ଷା ଚିନ୍ତାରେ ଧୈର୍ଯ୍ୟହରା ହେଇ ପଡୁଥିବା ବୋଉ ସୁବ୍ରତାର ମାଆ ହେବାର ସମ୍ବାଦ ଶୁଣି ଆନନ୍ଦରେ ଆତ୍ମହରା ହୋଇ ପଡୁଥିଲା । ତାର ସ୍ନେହସିକ୍ତ ମଙ୍ଗଳମୟୀ ମୂର୍ତ୍ତି ମନେପଡ଼ିବାରୁ ମୋ ଆଖିର ଲୁହ ଅବରୋଧ କରିପାରିଲି ନାହିଁ । ବୋଉର ଅନଭ୍ୟସ୍ତ ଅଙ୍ଗୁଳିରେ ବଙ୍କାତେଢ଼ା ଅକ୍ଷରଗୁଡ଼ାକ ମୋତେ ଜାଲୁ ଜାଲୁଆ ଦିଶିଲେ । ମୁଁ ଆଉ ଆଗକୁ ପଢ଼ିପାରିଲି ନାହିଁ । ଚିଠିଟିକୁ ଦୁଇ ଭାଙ୍ଗକରି ଟେବୁଲ୍ ଉପରେ ରଖିଦେଲି ।

ତିନି ପୁରୁଷ ଧରି ଆମ ପରିବାରକୁ କେଉଁ ଅପଦେବତାର ଅଭିସମ୍ପାତରୁ କେଜାଣି, ସନ୍ତାନ କଷ୍ଟ ଲାଗି ରହିଥିଲା । ମୋ ଜେଜେବାପାଙ୍କୁ ତାଙ୍କ ବାପା ପୁଅ କରି ଆଣିଥିଲେ ଭଉଣୀଠୁଁ । ଜେଜୀମା ପାଞ୍ଚ ଛଅଟା ସନ୍ତାନ ଜନ୍ମ ଦେଇଥିଲେ ସତ, କିନ୍ତୁ ଷଷ୍ଠୀଦେବୀ କାହାକୁ ଆୟୁଷ ଦେଇ ନଥିଲେ । ସେଇ ଏନ୍ତୁଡ଼ିଶାଳରୁ ହିଁ ସମସ୍ତେ ଆଖିବୁଜି ଦେଇଥିଲେ । ବଡ଼ କଷ୍ଟରେ ଅପର୍ତ୍ତିଆ ହେଇ ବଞ୍ଚିରହିଥିଲା ଚିର ରୁଗ୍‌ଣ, ଜନ୍ମରୁ ଶ୍ୱାସ କଷ୍ଟ ଭୋଗୁଥିବା ଗୋଟିଏ ସନ୍ତାନ, ସିଏ ମୋ ବାପା । କେତେ ଦିଅଁ ଦେବତାକୁ ପାଣି ଛଡ଼େଇ, ଡାକ୍ତର ବଇଦ କରି, ଜ୍ୟୋତିଷ ବ୍ରାହ୍ମଣଙ୍କ ବୋଲ ମାନି ଯମ ସାଙ୍ଗରେ ଯୁଝି ଯୁଝି କେମିତି ଦୁନିଆରେ ଜଣେ କରି ଠିଆ କରେଇଥିଲା ମୋ ବାପାଙ୍କୁ ସେ କଥା ଜେଜୀମା ବେଳେବେଳେ ଗପେ । ସେ ସବୁ ଲାଗେ ପରୀ ରାଇଜର କାହାଣୀ ପରି । ଗପୁ ଗପୁ ତା ଆଖିରୁ ଧାର ଧାର ଲୁହ ନିଗିଡ଼ି ପଡ଼େ । କୋଉ ଅଦୃଶ୍ୟ ଦେବତାଙ୍କ ଉଦ୍ଦେଶ୍ୟରେ ଦୁଇହାତ ଯୋଡ଼ି ମୁଣ୍ଡରେ ଲଗେଇ କହେ, ଯମ ଅଇଁଠାଟା, ସିଏ କୋଉ ମଣିଷରେ ମଣିଷ ! ମୁଁ ତା ପାଇଁ ଢମ କାଢ଼ିବି ? ଗାତକୁ ଯିବା ପର୍ଯ୍ୟନ୍ତ ସିଏ ବାପାଙ୍କ ପାଇଁ ଚାନ୍ଦ ଓଷା କରୁଥିଲା, ଯମଦୁତିଆ କରୁଥିଲା । ସଂକ୍ରାନ୍ତିରେ ଶିବ ମନ୍ଦିରରେ ବେଲପତ୍ର ଚଢ଼ଉଥିଲା । ବୋଉ ଉପରେ ତାର ଭରସା ଥିଲା କି ନାହିଁ କେଜାଣି ଏସବୁ ପୂଜାପାଠ ସେ ନିଜେ ହିଁ କରୁଥିଲା ।

ମୁଁ ଜନ୍ମହେବା ଆଗରୁ କିମ୍ବା ପରେ ମୋର କୌଣସି ଭାଇ ଭଉଣୀ ଜନ୍ମ ହୋଇନଥିଲେ । ବୋଉ କାକ ବନ୍ଧ୍ୟାର ଅପବାଦ ମୁଣ୍ଡେଇ ଚାଲିଥିଲା । ମୁଁ ଜନ୍ମ ହେବା ସମୟ ବେଳକୁ ପରିବାର ନିୟନ୍ତ୍ରଣ ଯୋଜନା ତ ନଥିଲା ବରଂ ଯିଏ ଯେତେ ସନ୍ତାନ ଜନ୍ମ କରୁଥିଲା, ସେ ସେତେ ଗୌରବର ଅଧିକାରିଣୀ ଥିଲା । ଆମ ଖଞ୍ଜା ଭିତରେ ବୋଉ ବ୍ୟତୀତ ଅନ୍ୟ ଯେତେ ସମ୍ପର୍କୀୟା ସ୍ତ୍ରୀଲୋକ ଥିଲେ ସମସ୍ତେ ଥିଲେ ଏକାଧିକ ସନ୍ତାନର ଜନନୀ, ବନ୍ଧ୍ୟାଜନିତ ସବୁ ଟାହୁଲି ଟାପରାକୁ ବୋଉ ଆତ୍ମସ୍ଥ କରିନେଉଥିଲା । ମୁଁ ରହିଗଲି ଏକଇର ବଳା ହୋଇ ।

ତା'ପରେ ଆସିଲା ମୋ ପାଳି । ଆମ ବାହାଘରର ଦଶବର୍ଷ ବିତିଯାଇଥିଲେ ସୁଦ୍ଧା ସୁବ୍ରତା କୋଳକୁ ସନ୍ତାନଟିଏ ଆସିଲା ନାହିଁ । ଏଥିପାଇଁ ମୁଁ ଯେତିକି ଚିନ୍ତିତ ନଥିଲି ତା'ଠାରୁ ଆହୁରି ବ୍ୟସ୍ତ ବିବ୍ରତ ହୋଇପଡ଼ିଥିଲା ମୋ ବୋଉ । ବଂଶରକ୍ଷା ଚିନ୍ତାରେ ସେ ତ ଏକଦମ୍ ପାଗଳୀ ପ୍ରାୟ ହୋଇ ପଡ଼ିଥିଲା । ଆମ ଦୁହିଁଙ୍କ ଉପରୁ ଅଶୁଭ ଦୃଷ୍ଟି କଟିଯିବା ପାଇଁ ଗ୍ରହଶାନ୍ତି ଯଜ୍ଞ ପାଖରୁ ଆରମ୍ଭ କରି ଅନ୍ୟ ଯେତେ ପୂଜାବ୍ରତ ତା ସାମର୍ଥ୍ୟ ଭିତରେ ସମ୍ଭବ କୌଣସିଟିକୁ ସେ ବାଦ ଦେଇନଥିଲା । ସୁବ୍ରତା ହାତରେ ପିନ୍ଧେଇ ଦେଇଥିଲା ମନ୍ତୁରା ପାଣିରେ ଧୁଆ ହୋଇଥିବା ଡେଉଁରିଆ ଓ ତାବିଜ । ମୋର ତ ଏସବୁ ପ୍ରତି ଶୈଶବରୁ ଥିଲା ଅବିଶ୍ୱାସ । ପଦାର୍ଥ ବିଜ୍ଞାନରେ ସ୍ନାତକୋତ୍ତର ପାସ୍ କରିଥିବା ସୁବ୍ରତା ଏସବୁ ଉପରେ ଆସ୍ଥା ସ୍ଥାପନା କରୁଥିଲା କି ନାହିଁ କେଜାଣି ବୁଡ଼ିଗଲା ଲୋକ କୁଟାଖିଏକୁ ଆଶ୍ରା କଲାଭଳି ବୋଉର ପୁରୁଣା ଖିଆଲ ସବୁକୁ ସେ ଅସ୍ୱୀକାର କରିନଥିଲା ।

ଡାକ୍ତର ପରୀକ୍ଷା କରିଥିଲି । ସବୁପ୍ରକାର ପଜିଟିଭ୍ ଲକ୍ଷଣ ସତ୍ତ୍ୱେ ସୁବ୍ରତାର ଗର୍ଭଧାରଣ ହେଉନଥିଲା । ସେ ବି ଧୀରେ ଧୀରେ ଅଧୈର୍ଯ୍ୟ ହେଉ ପଡୁଥିବାର ମୁଁ ଅନୁଭବ କରୁଥିଲି । ତାର ଅସଂପୂର୍ଣ୍ଣ ନାରୀତ୍ୱ, ଅସଫଳ ମାତୃତ୍ୱ ତାକୁ ଏକ ନ୍ୟୂନବୋଧତାରେ ଜଡ଼ସଡ଼ କରି ଦେଉଥିଲା । ତା ସମ୍ମୁଖରେ ମୁଁ ଅନ୍ୟ କୌଣସି ଶିଶୁକୁ ସ୍ନେହ ଆଦର ପ୍ରଦର୍ଶନ କଲେ ସେ ନିଜକୁ ଅପରାଧୀ ବୋଲି ଭାବୁଥିଲା । ନିଜ ଅପାରଗପଣିଆକୁ ଧିକ୍କାର କରୁଥିଲା । ମୋ ଦୃଷ୍ଟିରେ କିନ୍ତୁ ଏସବୁ ଧରାପଡ଼ି ଯାଉଥିଲା । ସେହି ହେତୁ ତା ଉପସ୍ଥିତିରେ ମୁଁ ଶିଶୁମାନଙ୍କ ପ୍ରତି ନିରାସକ୍ତ ଭାବ ଦେଖାଉଥିଲି ।

କ୍ରମେ ସୁବ୍ରତାର ବ୍ୟର୍ଥତାର ହା'ହୁତାଶ ଏତେ ତୀବ୍ର ହୋଇପଡ଼ିଲା ଯେ ସେ ଘରୁ ଆଉ କୁଆଡ଼େ ବାହାରୁ ନଥିଲା । କିଛି କାରଣ ନଥାଇ ଚିଡ଼ି ଚିଡ଼ି ହେଉଥିଲା । ଶରୀରରେ କିଛି ରୋଗ ନଥିଲେ ବି ସେ ନିଜକୁ ରୋଗିଣୀ ବୋଲି କହୁଥିଲା । ଆଉ ସେମିତି ବ୍ୟବହାର ବି କରୁଥିଲା । ବେଳେବେଳେ ଏଣୁତେଣୁ ଗପି ମୋ ମୁଣ୍ଡ ଖରାପ କରୁଥିଲା ତ ପୁଣି କିଛିଦିନ ପାଇଁ ସଂପୂର୍ଣ୍ଣ ଗୁମ୍‌ସୁମ୍ ରହୁଥିଲା । ମୁଁ କିନ୍ତୁ ତାର ସବୁ ଅସ୍ୱାଭାବିକତାକୁ ସହାନୁଭୂତି ସହ ଗ୍ରହଣ କରିନେଇଥିଲି ।

ଏମିତି କେତେଦିନ ଚାଲିଥା'ନ୍ତା କେଜାଣି, ଯେଉଁଦିନ ତାର ଗର୍ଭଧାରଣର ଲକ୍ଷଣ ସବୁ ଜଣାପଡ଼ିଲା, ସେ ପାଲଟିଗଲା ସ୍ୱାଭାବିକ ମଣିଷଟିଏ । ତାର ସବୁ ଅସ୍ୱାଭାବିକ ଆଚରଣ ଦୂର ହୋଇଗଲା । ସନ୍ତାନ କାମନା ତ ମୋର ଥିଲା କିନ୍ତୁ ସୁବ୍ରତାର ମାତୃତ୍ୱ କାମନା ତାକୁ ଯେପରି ବ୍ୟତିବ୍ୟସ୍ତ କରୁଥିଲା ମୁଁ ସେମିତି ଅନୁଭବ କରୁନଥିଲି । ମୁଁ ବ୍ୟସ୍ତ ହେଉଥିଲି ସୁବ୍ରତା ପାଇଁ । ସେ ଯେଉଁ ପରିମାଣରେ ତା'ର

ମାନସିକ ସନ୍ତୁଳନ ହରେଇ ବସୁଥିଲା, ଯେ କୌଣସି ପ୍ରକାର ଅଘଟଣ ଆଶଙ୍କାକୁ ଏଡ଼େଇ ଦିଆଯାଇ ପାରି ନଥା'ନ୍ତା ।

ଏତେ ଖୁସି ସୁବ୍ରତା ଏକୁଟିଆ ସମ୍ଭାଳି ପାରୁନଥିଲା । ଗାଁରେ ଏକୁଟିଆ ରହୁଥିବା ମୋ ବୋଉ, ତା ବାପା ମାଆ ସାଙ୍ଗ ସାଥୀ ଆତ୍ମୀୟସ୍ୱଜନମାନଙ୍କୁ ଗୋଟି ଗୋଟି କରି ଚିଠି ଲେଖି ସେ ନିଜେ ଜଣେଇ ଥିଲା । ପ୍ରଥମ ଡେଲିଭରି, ସାତମାସରେ ସାଦଭାର ଆସିବା ବିଧି । ତା ବାପା ତାଙ୍କ କର୍ତ୍ତବ୍ୟ କରିଥିଲେ । ଭବିଷ୍ୟତ ବଂଶଧରକୁ ନେଇ ବୋଉର ସ୍ୱପ୍ନ ଦେଖାର ତ ଅନ୍ତ ନଥିଲା ।

ଡଃ ମାଲହୋତ୍ରା ସୁବ୍ରତାର ଚେକଅପ୍ କରୁଥିଲେ । ସାତମାସର ପ୍ରେଗ୍‌ନାନ୍‌ସି, ପିଲାର ମୁଭ୍‌ମେଣ୍ଟ ନାହିଁ ? ଆଶଙ୍କା ପ୍ରକାଶ କରିଥିଲେ ଡାକ୍ତର ମାଲହୋତ୍ରା । ସେ ସ୍କାନିଂ ପାଇଁ ପରାମର୍ଶ ଦେଇଥିଲେ ।

ସବୁ ଉତ୍କଣ୍ଠାର ଅନ୍ତ କରି ସ୍କାନିଂ ରିପୋର୍ଟ ଆସିଲା । ବ୍ଲାଇଟେଡ୍ ଓଭମ୍ । ଡାକ୍ତର ବୁଝେଇଲେ । ବେଳେବେଳେ ଏମିତି ହୁଏ । ଗର୍ଭଧାରଣର ସକଳ ଲକ୍ଷଣ ସତ୍ତ୍ୱେ ପରିଣତିରେ ଜଣାପଡ଼େ ଫଲ୍ସ ପ୍ରେଗ୍ନେନ୍‌ସି । ମୁଁ ହତବମ୍ବ ହୋଇପଡ଼ିଲି । କେବେ ଶୁଣିନଥିବା 'ବ୍ଲାଇଟେଡ୍ ଓଭମ୍' 'ଫଲ୍ସ ପ୍ରେଗ୍ନେସି' ଶବ୍ଦ ସବୁ ମୋ ଭିତରେ ବିସ୍ଫୋରଣ ସୃଷ୍ଟି କଲା ଯେମିତି । ପ୍ରକୃତିର ଏ ନିଷ୍ଠୁର ପରିହାସକୁ ସହ୍ୟ କରିବା ପାଇଁ ମୁଁ ତ ଶକ୍ତି ସଞ୍ଚୟ କଲି କିନ୍ତୁ ସୁବ୍ରତାକୁ ସାମ୍ନା କରିବାର ନୈତିକ ସାହସ ମୋର ନଥିଲା । ମାତ୍ର ମୋର ସବୁ ଆଶଙ୍କା ଉଦ୍‌ବେଗକୁ ଭୁଲ୍ ପ୍ରମାଣିତ କରି ଅତିଶୀଘ୍ର ସେ ସତ୍ୟକୁ ସ୍ୱୀକାର କରିନେଲା ଭଳି ମନେହେଲା । ସିଏ ତା ଦୁଃଖ ଭୁଲି ମୋତେ ସାନ୍ତ୍ୱନା ଦେବାପାଇଁ ଚେଷ୍ଟା କଲା । ମୁଁ କାଳେ ହତାଶରେ ଭାଙ୍ଗିପଡ଼ିବି ସେଥିପାଇଁ ସେ ତା ଛାତିରେ ପଥର ଲଦିଦେଲା । ଜଣେ ଅନ୍ୟ ଜଣକର କଷ୍ଟ ଅନୁଭବ କରିବାରେ ଆମେ ଦୁହେଁ ଏତେ ସ୍ପର୍ଶକାତର ହୋଇପଡ଼ିଲୁ ଯେ ମୂଳଯନ୍ତ୍ରଣା ଆମ ପାଖରୁ ବିଚ୍ୟୁତ ହୋଇପଡ଼ିଲା । ଆମ ଭିତରେ ଆବେଗ ଅନୁରାଗ ଆକର୍ଷଣ ଆହୁରି ତୀବ୍ର ହେବାର ଆମେ ହୃଦ୍‌ବୋଧ କଲୁ । ସବୁ ଅପ୍ରାପ୍ତି ଭିତରେ ଆମେ ପ୍ରାପ୍ତିର ସ୍ୱାଦ ଅନୁଭବ କଲୁ । ସବୁ ବିଫଳତା ଆମକୁ ସଫଳତା ମଣ୍ଡିତ କଲା । ସନ୍ତାନ କାମନା ଆମକୁ ଆଉ ବିଚଳିତ କଲା ନାହିଁ କି ଅପ୍ରାପ୍ତିର ଅବଶୋଷ ଆମ ଭିତରେ ଗ୍ଲାନି ଭରି ଦେଲାନାହିଁ । ଆମ ଚେତନାର ଉତ୍ତରଣ ହେଲା ଯେମିତି, ସବୁକିଛି ଆପେ ଆପେ ହୋଇଯାଉଥିଲା । ଆମେ ପାଲଟି ଗଲୁ ଦୁଇଟି ଭିନ୍ନ ମଣିଷ । ଦୁଃସ୍ୱପ୍ନ ପରି ଭୁଲିଗଲୁ ବିଗତ ଦିନମାନଙ୍କରେ ଆମ ଉପର ଦେଇ ବହିଯାଇଥିବା ଝଡ଼ଝଞ୍ଜାକୁ ।

ଅଫିସ୍ କାମରେ ଚାରି ଦିନ ପାଇଁ ସହର ବାହାରକୁ ଯାଇଥିଲି । ଫେରିବା ବାଟରେ ଅସହାୟ ଓ ନିରାଶ୍ରୟ ଶିଶୁମାନଙ୍କର ଆଶ୍ରୟସ୍ଥଳ ହାପି ହୋମ୍ ପଡ଼ିଲା । ଚିନ୍ତା କଲି 'ହାପିହୋମ୍'ରୁ ଶିଶୁଟିଏ ନେଇ ପାଳିବାର ପ୍ରସ୍ତାବ ସୁବ୍ରତାକୁ ଦେଲେ କେମିତି ହୁଅନ୍ତା ? ମୋର ଅନୁପସ୍ଥିତିଜନିତ ନିଃସଙ୍ଗତାକୁ କାଟିବାପାଇଁ ତାକୁ ମିଳିଯା'ନ୍ତା ଜୀବନ୍ତ ଖେଳନାଟିଏ, ମୋର ବି ତାକୁ ନେଇ ଉଦ୍‌ବେଗ ଊଣା ହୋଇଯାନ୍ତା । କିନ୍ତୁ ସୁବ୍ରତା ଆଗରେ ଏ ଭାବନା ବ୍ୟକ୍ତ କରିବାର ଦୁଃସାହସ ମୋର ନଥିଲା ।

ଘରକୁ ଫେରି ସୁବ୍ରତା କୋଳରେ ସଦ୍ୟଜାତ ଶିଶୁଟିଏ ଦେଖି ମୁଁ ଅବାକ୍ ହୋଇଗଲି । ଆନନ୍ଦରେ ଅଧୀର ହେଇପଡ଼ି ସେ ମତେ କହିଲା– ମତେ କ୍ଷମା କରିଦେବ । ତମ ଅନୁମତି ନନେଇ ମୁଁ ବଡ଼ ନିଷ୍ପତ୍ତିଟିଏ ନେଇଗଲି । ଆମ ଚାକରାଣୀ ଲକ୍ଷ୍ମୀର ଝିଅ ଏ ଛୁଆକୁ ଜନ୍ମଦେଇ ବିଚାରୀ ସେଇ ହସ୍‌ପିଟାଲ୍‌ରେ ଆଖି ବୁଜିଦେଲା । ମୁଁ ଛୁଆଟାକୁ ଧରି ଆସିଲି ।

– ଦେଖିଲ; କେତେ ଗୁଲ୍ ଗୁଲ୍ ହେଇଛି ଛୁଆଟା ! ବର୍ଷ ବର୍ଷ ଧରି ମରୁଭୂମିର ତତଲା ବାଲି ଉପରେ ପଥହରା ହେଇଯାଇଥିବା ପଥିକଟିଏ ନିଶ୍ଚିନ୍ତ ନିରାପଦ ରାସ୍ତାଟିଏ ପାଇଗଲା ପରି ମୁଁ ଅନୁଭବ କଲି । ମୋ ମୁଣ୍ଡ ଉପରୁ ପଥର ବୋଝଟିଏ ଖଲାସ୍ ହେଇଗଲା ଭଳି ଲାଗିଲା । କିନ୍ତୁ ମୋ ସକଳ ଭାବାବେଗକୁ ଅବଦମନ କରି ତାଳସଜଭଳି ଶିଶୁଟିର କଅଁଳ ପାଦଦୁଇଟାକୁ ଆଉଁସି ଆଉଁସି କହିଲି–

ସୁବ୍ରତା; ବହୁତ ଭଲ କରିଛ । ବାରଘରେ ଘାଇଟି କରି ବଞ୍ଚୁଥିବା ଲକ୍ଷ୍ମୀ କ'ଣ ଏ ଛୁଆକୁ ସମ୍ଭାଳି ପାରିଥା'ନ୍ତା ? ହୀନସ୍ତା ହୋଇଯାଇଥାନ୍ତା ମାଆ ଛେଉଣ୍ଡ ଛୁଆଟା !

ସୁବ୍ରତା କିଛି କହିବା ଆଗରୁ ଷ୍ଟଡିରୁମ୍‌କୁ ପଶିଗଲି । ଥାକ ଉପରୁ ଦୁଇଟି ପୋଷ୍ଟକାର୍ଡ ଆଣି ଲେଖି ବସିଲି ଦୁଇଖଣ୍ଡ ଚିଠି । ଖଣ୍ଡେ ବୋଉ ପାଖକୁ ଆଉ ଖଣ୍ଡେ ସୁବ୍ରତା ଘରକୁ । ବିଷୟବସ୍ତୁ କିନ୍ତୁ ଗୋଟିଏ ।

ସୁବ୍ରତାର ପ୍ରିମେଚର୍ ବେବିଟିଏ ଜନ୍ମ ହେଇଛି । ବ୍ୟସ୍ତ ହେବନି । ମାଆ ଓ ପୁଅ ଦୁହେଁ ଭଲ ଅଛନ୍ତି । ଚିକିତ୍ସା ଚାଲିଛି, ଡାକ୍ତର ଆଶ୍ୱାସନା ଦେଇଛନ୍ତି । କିଛି ଆଶଙ୍କା ନାହିଁ ।



# ଅଭିଶପ୍ତ ଗନ୍ଧର୍ବୀ

ସୁବର୍ଣ୍ଣା ଦାଣ୍ଡ କବାଟଟା ଠେଲି ଭିତରକୁ ପଶିଲା । ଘରଟା ଗୁମ୍‌ସୁମ୍ ଲାଗୁଥିଲା । ବାପା ଅଗଣାରେ ଆରାମ ଚେୟାରଟାରେ ଦୁଇହାତ ମୁଣ୍ଡ ଉପରକୁ ଛନ୍ଦି ଅର୍ଦ୍ଧଶାୟିତ ଅବସ୍ଥାରେ ଆଖି ବନ୍ଦ କରି ବସିଥିଲେ । ବୋଉ ଗାଲରେ ହାତ ଦେଇ ବାଡ଼ିଦୁଆର ମୁହଁରେ ବସି ସୁଁ ସୁଁ ହେଉଥିଲା । ଜେଜୀମା ଗୋଡ଼ ଦୁଇଟା ଲମ୍ବେଇ ଦେଇ ଦେହଟାକୁ ଅଳ୍ପ ଆଗକୁ ଝୁଙ୍କେଇ ତଳକୁ ମୁହଁପୋତି ବସିଥିଲା ।

ବାପାଙ୍କୁ ଏମିତି ଅବେଳରେ ଘରେ ଦେଖିଲେ ସୁବର୍ଣ୍ଣା ଶଙ୍କିଯାଏ । କିଛି ଘଟଣ ଅଘଟଣ ଘଟିଲେ ହିଁ ବାପା ଏମିତି ସମୟରେ ଘରେ ରହନ୍ତି । ନହେଲେ ତାଙ୍କର ସବୁତକ ସମୟ କଟେ ମଠରେ କିମ୍ବା ଚଉପାଢ଼ୀର ତାସ୍‌ଖେଳ ଆସରରେ ।

ସୁବର୍ଣ୍ଣା ଶାଢ଼ୀ ବଦଳେଇ ବାଥରୁମ୍ ଗଲା । ଅନ୍ୟଦିନ ହୋଇଥିଲେ ସେ ଘରେ ଗୋଡ଼ ଦେଉ ଦେଉ ରୂପାଲୀର ଅଳିଅର୍ଦ୍ଦଳି, ଆପତ୍ତି ଅଭିଯୋଗ ଆରମ୍ଭ ହୋଇଯାଇଥାନ୍ତା ।

ଅପା ! କାଲି ଯେଉଁ ନେଲ୍‌ପଲିସିଟା ଆଣିଲୁ, ସେଇଟା ଡୁପ୍ଲିକେଟ୍ । ତାକୁ ଫେରେଇ ଦେବୁ । ବର୍ଷାଦିନ ପାଇଁ ଭଲ ରେନିସୁ ହଳେ ଆଣିଦେବୁ ତ ଅପା । ଏ ଚମଡ଼ା ଜୋତାଟା ଶୀଘ୍ର ଖରାପ ହେଇଗଲେ ତୁ ପୁଣି ପଛେ ମତେ ଦୋଷ ଦେବୁ । ବସ୍‌ଷ୍ଟାଣ୍ଡ ପାଖ ହୋଟେଲରେ ଭଲ ଜିଲାପି କରୁଚିମ ଅପା ! ଆସିଲାବେଳେ ମୋ ପାଇଁ ଦି'ଟା ଆଣନ୍ତୁନି । ଏମିତି କେତେ କ'ଣ ।

ଆଜି ସେମିତି କିଛି ଶୁଭୁ ନଥିଲା ।

ସୁବର୍ଣ୍ଣା ଜନ୍ମର ତେର ବର୍ଷ ପରେ ଜନ୍ମ ନେଇଥିଲା ରୂପାଲୀ । ତା'ର ଦୁଇ ବର୍ଷରେ ମଣ୍ଟୁ । ପିଲାଦିନୁ ଭାଇଭଉଣୀଙ୍କ ସେବା ଯତ୍ନ କରୁ କରୁ ସେମାନଙ୍କ ଆର୍ଥିକ ନିରାପତ୍ତାର ଭାର ବି ସେ ନିଜ ମୁଣ୍ଡ ଉପରକୁ ନେଇଗଲା । ସୁବର୍ଣ୍ଣା ବାପା କିଛି କରନ୍ତି ନାହିଁ । ବାପା ମାଆଙ୍କର ଏକମାତ୍ର ସନ୍ତାନ ସେ ଥିଲେ । ପିଲାଦିନୁ ଅୟସରେ ବଢ଼ିଥିଲେ । କୁଟାଖଣ୍ଡକ ଦିଖଣ୍ଡ କରିବାକୁ ତାଙ୍କୁ ଦେଇନଥିଲେ ତାଙ୍କ ବାପା । ସେଇ ଅୟସପଣ ଏବେ କାଳ ହେଇଛି ସୁବର୍ଣ୍ଣା ପାଇଁ । ପୈତୃକ ସମ୍ପତ୍ତି ଯାହା ଥିଲା, ଭାଗ ବଖରାରୁ ଯାହା ମିଳେ, ସେତିକି ତାଙ୍କର ଆର୍ଥିକ ସମ୍ବଳ । ବର୍ଦ୍ଧିଷ୍ଣୁ ପରିବାରର ସକଳ ଆବଶ୍ୟକତା ମେଣ୍ଟେ ନାହିଁ । ଗାଁ ପିଲାଙ୍କୁ ଟିଉସନ୍ କରି ପାଠ ପଢ଼ୁଥିଲା ସୁବର୍ଣ୍ଣା । ଗାଁ କଲେଜରୁ ପାଠ ସରୁସରୁ ଚାକିରୀ ଖଣ୍ଡେ ବି ମିଳିଗଲା ଗାଁ ତହସିଲ୍ ଅଫିସରେ । ତା ପରଠୁଁ କେବେ କୌଣସି ଜଞ୍ଜାଳରେ ପଶିବାକୁ ଚାହୁଁ ନଥିବା ବାପା ସଂପୂର୍ଣ୍ଣ ନିର୍ଜଞ୍ଜାଳ ହୋଇଗଲେ । ଘର ସଂସାରର ଦାୟିତ୍ୱ ପ୍ରତି ସେ ସଂପୂର୍ଣ୍ଣ ନିରାସକ୍ତ ହୋଇପଡ଼ିଲେ । ଚଉପାଢ଼ୀର ତାସ୍ ଖେଳ, ଗାଁର ନ୍ୟାୟନିଶାପ, ମଠରେ ଭଜନ କୀର୍ତ୍ତନ କରି ତାଙ୍କର ସମୟ କଟିଲା । ଏତେ କମ୍ ବୟସରୁ ପରିବାରର ଆର୍ଥିକ ଦାୟିତ୍ୱ ସମ୍ଭାଳୁଥିବା ସୁବର୍ଣ୍ଣା ହଠାତ୍ କେମିତି ବୟସ୍କ ବୟସ୍କ ଲାଗିଲା । ତା ଭବିଷ୍ୟତ ସଂପର୍କରେ ସମସ୍ତେ ନିସ୍ପୃହ ରହିଲେ । କହିବାକୁ ଗଲେ ଜାଣିଶୁଣି ଏଡ଼େଇ ଚାଲିଲେ । ଫଳନ୍ତି ଗଛଟିଏ ଭଳି ସେ କେବଳ ଦେଇ ଚାଲିଲା । ଏ ଭିତରେ କେତେବେଳେ କେଉଁ ଋତୁ ଆସି ତା ଉପର ଦେଇ ପ୍ରବାହିତ ହୋଇ ଚାଲିଗଲା, କେହି ତାର ଖବର ରଖିଲେ ନାହିଁ । ଏପରିକି ସିଏ ନିଜେବି । ଆଉ ଆଜି, ଯୌବନର ଅପରାହ୍ନରେ ସେ ଯେତେବେଳେ ସ୍ୱପ୍ନଟିଏ ଦେଖିବା ଆରମ୍ଭ କରିଦେଇଥିଲା, ଏମିତି ଅଘଟଣଟିଏ ଘଟିଲା ଯେ ସେ ଆଖିପତା ପକାଇବାକୁ ଭୟ କଲା, କାଳେ ଆଖିପତା ପଡୁ ପଡୁ ସେ ଘୁମେଇ ପଡ଼ିବ ଆଉ ସୁନ୍ଦର ସ୍ୱପ୍ନଟିଏ ତାକୁ ସମ୍ମୋହିତ କରିଦେବ । ଅଥଚ ଆଖି ଖୋଲିଲା ବେଳକୁ ବାସ୍ତବତାର ରଡ଼ନିଆଁ ତା କଅଁଳ ପାପୁଲିକୁ ଜାଳିପୋଡ଼ି ଛାରଖାର କରିଦେବ ।

ସୁବର୍ଣ୍ଣାର ସହକର୍ମୀ ଥିଲା ଅଶୋକ । ବିପତ୍ନୀକ । ବିବାହର ୭/୮ ବର୍ଷ ପର୍ଯ୍ୟନ୍ତ ତା ସ୍ତ୍ରୀର କୌଣସି ସନ୍ତାନ ସନ୍ତତି ହେଲେ ନାହିଁ । ବହୁ ପ୍ରଚେଷ୍ଟା ସତ୍ତ୍ୱେ ତା ସ୍ତ୍ରୀ ବହୁ ବିଳମ୍ବରେ ଗର୍ଭଧାରଣ କରିଥିଲା, କିନ୍ତୁ ବିଧାତା ସହିଲା ନାହିଁ । ସିଜରିନ୍ ହୋଇ ଛୁଆଟା ଜନ୍ମ ହେଲା ପରେ ସେଇ ଅପରେସନ୍ ଟେବୁଲ୍ ଉପରେ ସେ ଆଖି ବୁଜିଦେଲା । ଛୁଆଟା ତା ମାମୁଁ ଘରେ ଅଛି । ସେଇଦିନଠୁଁ ସେ ସଂପୂର୍ଣ୍ଣ ଏକୁଟିଆ । ଆତ୍ମୀୟ ସ୍ୱଜନଙ୍କ ସକଳ କାକୁତି ବିନତି ଆଦେଶ ଉପଦେଶ ବ୍ୟର୍ଥ ଗଲା । ଅଶୋକ ଦ୍ୱିତୀୟ ବିବାହ ପାଇଁ ମଙ୍ଗିଲା ନାହିଁ । ବଦଳି ହେଇ ସେ ସୁବର୍ଣ୍ଣା ଅଫିସରେ ଜଏନ୍ କଲା ପରଠୁଁ ଦୁହେଁ ଗୋଟିଏ ଟେବୁଲ୍‌ରେ ମୁହାଁମୁହିଁ ବସୁଥିଲେ । ରଙ୍ଗ ତୋଫା ଗୋରା ନହେଲେ ବି ଶ୍ୟାମଳ ରଙ୍ଗ ସାଙ୍ଗକୁ ସୁବର୍ଣ୍ଣାର ଶାଣିତ ବ୍ୟକ୍ତିତ୍ୱ ଅଶୋକ ମନରେ ହଲ୍‌ଚଲ୍ ସୃଷ୍ଟି କରିଥିଲା । ଅନେକ ଥର ନିଜ ମନ କଥା ତାକୁ କହିବାକୁ ସେ ଚେଷ୍ଟା କରି ପାରିନଥିଲା । ସେଦିନ ପ୍ରଥମ କରି ସୁବର୍ଣ୍ଣାକୁ ସେ ପ୍ରସ୍ତାବ ଦେଇଥିଲା କ୍ୟାଣ୍ଟିନ୍‌ରେ କଫି ପିଇବାକୁ । ତାକୁ ଚକିତ କରିଦେଇ ସୁବର୍ଣ୍ଣା ବି ସମ୍ମତି ଜଣାଇଥିଲା ।

କଫି କପ୍‌ରେ ଚୁମ୍ବନଟିଏ ଦେଇ ଅଶୋକ ପ୍ରଥମେ କଥା ଆରମ୍ଭ କଲା ।

କୌଣସି ଗୌରଚନ୍ଦ୍ରିକା ନଦେଇ ସିଧାସଳଖ ମୁଁ ତମକୁ କଥାଟିଏ କହିବି ସୁବର୍ଣ୍ଣା । ପ୍ରେମ ପ୍ରଣୟ ପାଇଁ ପୂର୍ବରାଗ ଅନୁରାଗର ବୟସ ଆମେ ଅତିକ୍ରାନ୍ତ କରିସାରିଲେଣି । ଏସବୁ ଭାବପ୍ରବଣତା ଅପେକ୍ଷା ଆମର ଜୀବନ ବଞ୍ଚିବାପାଇଁ ଦରକାର ଦରଦୀ ବନ୍ଧୁଟିଏ । ଅବଲମ୍ବନଟିଏ । ଗୋଟିଏ ଛାତତଳେ ରହି ପରସ୍ପର ପରସ୍ପରର ସୁଖଦୁଃଖରେ ସମଭାଗୀ ହେବାପାଇଁ ଆପଣାର ମଣିଷଟିଏ ।

ମୁଁ ଭାବୁଛି, ସାରାଜୀବନ ପାଇଁ ତମ ଅପେକ୍ଷା ଭଲ ସାଥୀଟିଏ ମୁଁ ଆଉ ମୋ ଜୀବନରେ ପାଇବି ନାହିଁ । ତମର ମତାମତ ମୁଁ ଚାହେଁ ।

ଏକା ନିଃଶ୍ୱାସରେ ଏତକ କହିଦେଇ ଅଶୋକ କଫି କପ୍‌ଟା ଉଠେଇ ଓଠ ପାଖରେ ଧରିଲା ।

ଚମକିପଡ଼ିଲା ସୁବର୍ଣ୍ଣା ।

ହୁଏତ ତା ମନ ଭିତରେ ଅଶୋକ ପାଇଁ ଏମିତି ଶୂନ୍ୟସ୍ଥାନଟିଏ ଥିଲା ଯାହାକୁ ନିର୍ଦ୍ୱନ୍ଦ୍ୱରେ ସମର୍ପି ଦେବାରେ ତା'ର କିଛି ଆପତ୍ତି ନଥିଲା । କିନ୍ତୁ ତାପରେ ? ତା ପରେ କ'ଣ ହେବ ?

ରୂପାଲୀର ବାହାଘର, ମଣ୍ଟୁର ପାଠପଢ଼ା ଓ ପରିବାରର ଯାବତୀୟ ଦାୟିତ୍ୱ, ଅଶୋକ ଉପରେ ସେ କାହିଁକି ଏସବୁ ଲଦିବ ? ବର୍ଷ ବର୍ଷ ଧରି ପୁଞ୍ଜୀଭୂତ

ହୋଇରହିଥିବା ବାପାଙ୍କ ପ୍ରତି ନିରବ ଅଭିମାନ ସହ ତା'ର ସ୍ୱାଭିମାନ ଧକ୍କା ଖାଇ ଏକ ନିଃଶବ୍ଦ ବିସ୍ଫୋରଣ ହେବାର ସେ ସଜ୍ଞାନ ଚିତ୍ତରେ ଅନୁଭବ କଲା । ସୁପ୍ତ ଆଗ୍ନେୟଗିରିର ଲାର୍ଭାଗୁଡ଼ିକ ଯେମିତି ଜୀବନ୍ତ ହୋଇ ତା ଚିନ୍ତା ଚେତନାକୁ ଆପ୍ଲୁତ କରିଦେଲେ । ଭିତରେ ଭିତରେ ସେ ଅସ୍ତବ୍ୟସ୍ତ ହୋଇପଡ଼ିଲା । ତଥାପି ବର୍ଷ ବର୍ଷ ଧରି ନିଜର ସକଳ ଆବେଗିକ ଅନୁଭବକୁ ନିୟନ୍ତ୍ରିତ କରିବାରେ ଅଭ୍ୟସ୍ତ ସୁବର୍ଣ୍ଣା କିଛି ସମୟ ପାଇଁ ସ୍ଥାଣୁ ହୋଇ ବସିରହିଲା । ସତେ ଯେମିତି ସେ କିଛି ଶୁଣିନାହିଁ । କିଛି ଅନୁଭବ କରିନାହିଁ । ତାକୁ ପସନ୍ଦ ଲାଗୁଥିବା ଅଶୋକ ବୋଲି ସହକର୍ମୀ ଜଣକ ତା ଆଗରେ ବସିନାହିଁ । ଏକୁଟିଆ କ୍ୟାଣ୍ଟିନ୍‌ରେ ବସି ଚା ପିଉଚି ନିର୍ଲିପ୍ତା ନିରାସକ୍ତା ସୁବର୍ଣ୍ଣା ।

ଧୈର୍ଯ୍ୟହରା ହୋଇ ଉଠୁଥିଲା ଅଶୋକ । ସୁବର୍ଣ୍ଣାର ଚିନ୍ତିତ ଆଖିପତା ଆଡ଼େ ଚାହିଁ ସେ ପୁଣି ଥରେ ପ୍ରଶ୍ନ କଲା ।

ତମର ବନ୍ଧୁ ହେବାପାଇଁ କ'ଣ ତଥାପି ମୋ ଭିତରେ କିଛି ଅଭାବବୋଧ ରହିଯାଇଛି ସୁବର୍ଣ୍ଣା ! ତାହେଲେ କୁହ, ତମର ଯୋଗ୍ୟ ପ୍ରାର୍ଥୀ ହେବାପାଇଁ ମୋତେ କି କି ପରୀକ୍ଷା ଦେବାପାଇଁ ପଡ଼ିବ ?

ଆନ୍ତରିକତାର ହସଟିଏ ଖେଳି ଯାଉଥିଲା ଅଶୋକର ଓଠରେ । ଏ ପର୍ଯ୍ୟନ୍ତ କଫି କପ୍‌ରେ ଚିତ୍ରିତ ସୁନ୍ଦର ମୟୂର ପୁଚ୍ଛ ଉପରେ ଦୃଷ୍ଟି ନିବଦ୍ଧ କରି କଫି ପିଇବାର ଅଭିନୟ କରୁଥିବା ସୁବର୍ଣ୍ଣା ଦୃଷ୍ଟିତୋଳି ଅଶୋକ ମୁହଁକୁ ଚାହିଁଲା ।

ଗୋଟିଏ ଜନ୍ମ କାହିଁକି, ସାତ ଜନ୍ମପାଇଁ ନିର୍ଭରଯୋଗ୍ୟ ନିର୍ଭୀକ ବ୍ୟକ୍ତିତ୍ୱଟିଏ । ତା'ର ଦୁଇ ସୁନ୍ଦର ତେଜୀୟାନ ଆଖିର ଅକାଶରେ ଜନ୍ମଜନ୍ମାନ୍ତର ପାଇଁ ହଜିଗଲେ ସୁଦ୍ଧା ତଥାପି ନିଜକୁ ହଜେଇବାର ଅବଶୋଷ ରହିବ ନାହିଁ । ତା'ର ସୁନ୍ଦର ବଳିଷ୍ଠ ବାହୁରେ ଜୀବନକୁ ଛୁଇଁ ଦେବାର ଗଭୀର ପ୍ରତିଶ୍ରୁତି ।

ତଥାପି ସୁବର୍ଣ୍ଣା ନୀରବ ରହିଲା ।

ତା'ପରେ କୁଣ୍ଠିତ ହସଟିଏ ଓଠରେ ଖେଳେଇ ସେ ଝଡ଼ ବେଗରେ ଉଠି ଚାଲିଗଲା । ଅପେକ୍ଷା କଲା ନାହିଁ ଅଶୋକକୁ ।

ସାତ ଆଠ ବର୍ଷ ବୈବାହିକ ଜୀବନ କଟେଇଥିଲେ ସୁଦ୍ଧା ନାରୀର ଏ ରହସ୍ୟମୟ ରୂପ ତାକୁ ଅତ୍ୟନ୍ତ ଦୁର୍ବୋଧ୍ୟ ମନେ ହେଲା, ସୁବର୍ଣ୍ଣା ଓଠର ହସ ଚେନାକ ସ୍ୱୀକୃତିର ସ୍ୱାକ୍ଷର ନା ପ୍ରତ୍ୟାଖ୍ୟାନର ଲାଞ୍ଛନା ? ଅବଶିଷ୍ଟ କଫି ଟିକକ ଓଠ ପାଖକୁ ନେଉ ନେଉ ଚିନ୍ତା କରୁଥିଲା ଅଶୋକ । ଏତିକିରେ ହାରିଯିବାର ପାତ୍ର ସେ ନଥିଲା ।

ଘଟଣାର ସପ୍ତାହକ ପରେ ରବିବାରର ଗୋଟିଏ ଅଳସ ଅପରାହ୍ଣରେ ଅଶୋକର ସ୍କୁଟର ଅଟକିଥିଲା ସୁବର୍ଣ୍ଣା ଘର ଆଗରେ । ତା'ର ସୌଭାଗ୍ୟ କି ଦୁର୍ଭାଗ୍ୟ କେଜାଣି, ସେଦିନ ସୁବର୍ଣ୍ଣା ଘରେ ନଥିଲା । ସୁବର୍ଣ୍ଣାର ବନ୍ଧୁ ବୋଲି ପରିଚୟ ପାଇବା ପରେ ରୂପାଲୀ ଚର୍ଚ୍ଚା କରିଥିଲା ତାକୁ । ଦୀର୍ଘ ଦୁଇ ଘଣ୍ଟାର ନିଷ୍ଫଳ ପ୍ରତୀକ୍ଷା ପରେ ନିରାଶ ହୋଇ ଫେରିଥିଲା ଅଶୋକ ।

ସୁବର୍ଣ୍ଣା ଘରକୁ ଫେରି ଅଶୋକ ଆସିବା କଥା ଶୁଣି ମନେ ମନେ ଉଲ୍ଲସିତ ହୋଇ ଉଠିଥିଲା । ସେଦିନ ସାରାରାତି ସେ ବିନିଦ୍ର ରହି ଅଶୋକକୁ ଅନୁଭବ କରୁଥିଲା । ଅନେକ ସ୍ୱପ୍ନ ଦେଖି ପକାଇଥିଲା । ପାହାନ୍ତା ପହରକୁ ଯେଉଁ ଛାଇ ନିଦ ଟିକେ ଲାଗି ଯାଇଥିଲା, ସେତକ ବି କେବଳ ଅଶୋକମୟ ହୋଇଯାଇଥିଲା ।

ପରଦିନ ଅଫିସ୍‌ରେ ସାମ୍ନାସାମ୍ନି ବସିଥିଲେ ବି ଆବେଗରେ, ଅନୁରାଗରେ, ଲଜ୍ଜାରେ ସେ ଅଶୋକ ଆଡ଼କୁ ମୁଣ୍ଡଟେକି ଚାହିଁପାରିଲା ନାହିଁ । ସାରାରାତି ଅନିଦ୍ରା ହେତୁ ତା ଆଖି କେମିତି ଫୁଲିଲା ଫୁଲିଲା ଦିଶୁଥିଲା । ସେଇ ଫୁଲିଲା ଫୁଲିଲା ଆଖିଆଡ଼େ ତୀର୍ଯ୍ୟକ ଚାହିଁ ସେଦିନ ସାରା କେବଳ ସୁବର୍ଣ୍ଣାକୁ ଅଶୋକ ଅଧ୍ୟୟନ କରି ଚାଲିଥିଲା ।

ସୁବର୍ଣ୍ଣା ଚାହୁଁଥିଲା, ଆଜିବି ଅଶୋକ ତାକୁ କ୍ୟାଣ୍ଟିନ୍ ଡାକୁ । କିଛି କହୁ । ଗତକାଲି ତା ଘରକୁ ଯାଇ ନିରାଶ ହୋଇ ଫେରିବା କଥା, କାଲି ସାରାରାତି ଅନିଦ୍ରା ରହିବା କଥା, କ୍ୟାଣ୍ଟିନ୍ ପାଖ ଶିମିଳି ଗଛରେ ଶିମିଳି ଫୁଲର ମହୋତ୍ସବ କଥା ଇତ୍ୟାଦି ଇତ୍ୟାଦି । ଅଶୋକ ବି ସୁବର୍ଣ୍ଣା ପାଖରୁ ସେୟା ଚାହୁଁଥିଲା କି କ'ଣ, କେଜାଣି, କିନ୍ତୁ କେହି କାହାକୁ କିଛି କହିପାରି ନଥିଲେ ସେଦିନ ।

ଅଶୋକ ମନେ ମନେ ନିଷ୍ପତ୍ତି ନେଲା, ସୁବର୍ଣ୍ଣାକୁ ଯାହା କହିବା କଥା ସେ ତା ଘରେ ହିଁ କହିବ । ଆହୁରି କହିବ । ତା ଅନ୍ତରରୁ ଟାଣି ଓଟାରି ବାହାର କରି ଆଣିବ ସମ୍ମତି । ସେ ଥକି ପଡ଼ିବ ନାହିଁ । ହାରିଯିବ ନାହିଁ । ଯଦିଓ ସୁବର୍ଣ୍ଣା ଥିଲା ତା'ର ଲକ୍ଷ୍ୟ, ରୂପାଲୀର ଆକର୍ଷଣ ବି କମ୍ ନଥିଲା ତାପାଇଁ । ସୁବର୍ଣ୍ଣା ଭଳି ସେ ଗୁରୁ ଗମ୍ଭୀର ନୁହେଁ, ପାହାଡ଼ୀ ଝରଣା ଭଳି ଛଳ ଛଳ । ତା'ର ସାନ୍ନିଧ ବି ମନ୍ଦ ନୁହେଁ । ସଂଧ୍ୟାର ରଜନୀଗନ୍ଧା ଭଳି ଭୁରୁ ଭୁରୁ ବାସ୍ନାମୟ ।

ସୁବର୍ଣ୍ଣା ବାଥରୁମ୍‌ରୁ ବାହାରି ଜେଜୀମା ପାଖକୁ ଗଲା । ଆଜିର ଅଘଟଣ ସବୁ ଜେଜୀମା ତା ଆଗରେ ବଖାଣି ବସିଲା । ରୂପାଲି ଜିଦି କରିବସିଛି । ସେ ଅଶୋକ ବାବୁଙ୍କୁ ବାହାହେବ । ବାପାଙ୍କ ଅପାରଗ ପଣିଆକୁ ଖୋଲାଖୋଲି ଧିକ୍କାର କରିଛି । ତାଙ୍କର ଝିଅଙ୍କୁ ବାହା ଦେବାପାଇଁ ସାମର୍ଥ୍ୟ ନାହିଁ ଓ ସେଥିପାଇଁ ଅପା ନ ବାହାହୋଇ ରହିଗଲା ଏବଂ ତାକୁ ଜାନି ଯୌତୁକ ଦେଇ ବାହା ଦେବାର ସମ୍ବଳ

ତାଙ୍କ ପାଖରେ ନାହିଁ । ଅଶୋକବାବୁଙ୍କୁ ବାହା ନହେଲେ ସେ ବି ଅପାଭଳି ଅଭିଆଡ଼ୀ ହେଇ ରହିଯିବ । ଏକଥା ସୂଚେଇ ଦେଇଛି । ସେ ଆଦୌ ଅଭିଆଡ଼ୀ ହେଇ ରହିବାକୁ ଚାହେଁ ନାହିଁ । ତେଣୁ ଯେମିତି ହେଉ ସେ ଅଶୋକ ବାବୁଙ୍କୁ ବାହାହେବ । ଘରେ କେହି ରାଜି ହୁଅନ୍ତୁ ବା ନହୁଅନ୍ତୁ । ଦରକାର ପଡ଼ିଲେ ସେ ନିଜେ ଯାଇ ଅଶୋକ ବାବୁଙ୍କୁ ଏ ପ୍ରସ୍ତାବ ଦେବ ।

ଯୁଗ ଯୁଗ ଧରି ରୁକ୍ଷ ଉଷର ଭୂଇଁରେ ସଦ୍ୟ ଅଙ୍କୁରିତ ହେଉଥିବା କୋମଳ ବୀଜଟିକୁ ଯେମିତି କେହି ନିଷ୍ଠୁର ନିର୍ଦ୍ଦୟ ଭାବରେ ଦଳି ମକଚି ଗୁଣ୍ଡ କରିଦେଲା । ସୁବର୍ଣ୍ଣାର ପାଦଠାରୁ ମୁଣ୍ଡ ପର୍ଯ୍ୟନ୍ତ ଅସଂଖ୍ୟ ଅବ୍ୟକ୍ତ ଯନ୍ତ୍ରଣାର ତୀର ଛାଇ ହେଇଗଲା । ତା ଶରୀରରେ ଥିବା ସ୍ନାୟୁଗୁଡ଼ିକ ଯେମିତି କେହି ଟାଣି ଓଟାରି ରଟ ରଟ କରି ଛିଣ୍ଡେଇ ଫିଙ୍ଗିଦେଲା । ସେ ଅସ୍ଥି ମଜ୍ଜା ନଥିବା ମାଉଁସ ମେଞ୍ଚାଟିଏ ଭଳି ବସି ପଡ଼ିଲା ସୋଫା ଉପରେ ।

ବୋଉ ଚା କପ୍‌ଟା ଆଣି ତା ହାତକୁ ବଢ଼େଇଦେଲା, ତାର ଉଦ୍‌ଗତ କୋହକୁ ରୋକୁ ରୋକୁ କାନ୍ଦି ପକେଇଲା ଆଉ ସୁବର୍ଣ୍ଣାର ଅଲରା ବାଳକୁ ସାଉଁଳି ଦେଇ କହିଲା, ସବୁ ମୋରି ପୋଡ଼ା କପାଳ । ନହେଲେ କ'ଣ ତୋ ସୁଖ ଶାନ୍ତି ଜଳାଞ୍ଜଳି ଦେଇ ତୁ ଆମମାନଙ୍କ ପାଇଁ ଏମିତି ସନ୍ତୁଳି ହେଇଥାନ୍ତୁ ? ଏଡ଼ିକି ଟିକେ ମେଞ୍ଚଡ଼ ଟୋକୀ । ସବୁ ଲାଜ ସରମକୁ ପୋଡ଼ିଖାଇ ଏମିତି ମୁହେଁ ମୁହେଁ ଜବାବ ଦିଅନ୍ତା ବାପଟା ଆଗରେ ।

ସୁବର୍ଣ୍ଣା ବୋଉ ଛାତିରେ ମୁଣ୍ଡଟା ଢଳେଇ ଦେଇ ବହୁଦିନରୁ ସଞ୍ଚିତ ଲୁହ ଧାର ସବୁ ନିଗାଡ଼ି ତା କାନିଟା ଭିଜେଇ ଦେଲା ନିଃଶବ୍ଦରେ । ତାକୁ ମନେହେଲା ଯେମିତି କୋଉ ଅନନ୍ତ କାଳରୁ ସେ ବୋଉକୁ ଏମିତି ଅନୁଭବ କରିନାହିଁ । ତା'ର ଇଚ୍ଛା ହେଲା ଅଫିସ୍‌ର ଦାୟିତ୍ୱ, ପରିବାରର ଜଞ୍ଜାଳ, ତା ବ୍ୟକ୍ତିଗତ ଜୀବନର ବ୍ୟର୍ଥତା ସବୁକିଛି ଦୂରକୁ ଫିଙ୍ଗିଦେଇ ସେ ବୋଉର ଏଇ ଅଭୟ ଛାତି ତଳେ ମୁଣ୍ଡ ରଖି ଚିରଦିନ ପାଇଁ ନିଶ୍ଚିନ୍ତରେ ଶୋଇଯାଆନ୍ତା । ସବୁ ବେଦନାବୋଧ ଓ ହା ହୁତାଶର ଅନ୍ତ ଘୋଇଯା'ନ୍ତା । ସେ ପୁଣି କିଶୋରୀଟିଏ ଭଳି ନିର୍ଜଞ୍ଜାଳୀ ହୋଇପଡ଼ନ୍ତା । ସେଠି କର୍ତ୍ତବ୍ୟର ତାଡ଼ନା ନ'ଥାନ୍ତା । ବିବେକର ଦଂଶନ ନଥାନ୍ତା । ଖାଲି ହସ ଆଉ ଖୁସି ହିଁ ଥାନ୍ତା ଭରପୂର ହୋଇ ।

କିନ୍ତୁ ଏସବୁ ତା ଭାଗ୍ୟରେ ନାହିଁ ।

ସେ ଅଭିଶପ୍ତ ଗନ୍ଧର୍ବୀ । ଯନ୍ତ୍ରଣା ହିଁ ତା'ର ଗତି । ଅନୁଭୋଗରେ ତାର ଶାନ୍ତି । ନିଜକୁ ତିଳ ତିଳ କରି ଦଗ୍ଧ କରିବାରେ ତାର ଜୀବନ୍ମୁକ୍ତି ।

ବୋଉର ପଣତକାନି ଧରି ସେ ଖୁବ୍ ରଗଡ଼େଇ କରି ଲୁହଭିଜା ମୁହଁଟାକୁ ପୋଛି ପକେଇଲା । ତା'ରି ସାଙ୍ଗରେ ପୋଛି ପକେଇଲା ତା ମନସିଲଟର ଆଙ୍କି ହେଇଥିବା ସ୍ୱପ୍ନ, କାମନା ଓ ବାସନାର ଅସ୍ପଷ୍ଟ ଆକୃତି ସବୁକୁ । ନିଜକୁ ଦୃଢ଼ କଲା । ଶୈଶବରୁ ରୂପାଲୀର ସବୁ ଅଳି ଅର୍ଦ୍ଦଳିକୁ ପୂରଣ କରି ଆସୁଥିବା ସୁବର୍ଣ୍ଣା ପାଖରେ ତା'ପାଇଁ ଅଦେୟ ହୋଇ କିଛି ନାହିଁ । ଅଶୋକ ତା ଅନୁରୋଧ ଆଦୌ ଅବମାନନା କରିବ ନାହିଁ । ସେ ଭରସା ତା'ର ଅଛି । ଅଶୋକ ସହ ରୂପାଲୀର ବାହାଘର ହେବ ।

ସେ ମୁହଁ ଟେକି ବୋଉ ମୁହଁକୁ ଚାହିଁଲା । ଚତୁର୍ଥୀ ଚାନ୍ଦ ପରି କ୍ଷୀଣ ଦୁର୍ବଳ ହସଟିଏ ତା ଓଠରେ ଖେଳିଗଲା । ବୋଉର କାନ୍ଦୁରା ମୁହଁକୁ ଦୁଇ ହାତରେ ଟୋକି ଧରି ସେ ସହଜ କଣ୍ଠରେ କହିଲା ।

ବୋଉ ! ରୂପାଲୀ ଯଦି ଚାହୁଁଛି, ମୁଁ ଅଶୋକ ବାବୁଙ୍କୁ ରାଜି କରେଇଦେବି । ଅନ୍ତତଃ ବିନା ଯୌତୁକରେ ଭଲ ବରଟିଏ ଆମ ରୂପାଲୀ ପାଇଁ ସହଜରେ ମିଳିଗଲା ବୋଲି ଜାଣ । ତମେମାନେ ବାହାଘର ପାଇଁ ଆୟୋଜନ କର । ମୁଁ କାଲି ଜି.ପି.ଏଫ୍‌ରୁ ଟଙ୍କା ଉଠାଇବା ବ୍ୟବସ୍ଥା କରୁଛି ।



# ପାପ

ଫୁଲାଏ ଟ୍ୟାସିଲ୍ ଭର୍ତ୍ତିକରି ମୁଣ୍ଡରେ କେଲୁଣି ଖୋସା ପରି ଖୋସାଟିଏ ଥାପି, ତା' ଉପରକୁ ନାମକୁ ମାତ୍ର ଓଢ଼ଣା ଟାଣି, ଛାତି ଫୁଲେଇ ଦୁଇ ବାହୁକୁ ହଲେଇ ସୁଲି ଯେତେବେଳେ ଗାଁ ଦାଣ୍ଡରେ ଚାଲିଯାଏ, ଗାଁ ମାଟି ଦୁଲୁକିଲା ଭଳି ଲାଗେ । ଛକ ଜାଗାମାନଙ୍କରେ ଖଟି ଜମେଇଥିବା ବେକାର ଟୋକାମାନେ ତ ତାକୁ ଦେଖି ଅଥୟ ହେଇଯାଆନ୍ତି, ବେଳେବେଳେ ତା'ର ଗୁରୁଜନ ସ୍ଥାନୀୟ ଲୋକ ହିସାବରେ ଖୁଡୁତାଶୁର, ମଳାଶୁର, ଦେଢ଼ଶୁର ଶ୍ରେଣୀୟ ବୟୋଜ୍ୟେଷ୍ଠମାନଙ୍କର ବି ପାଟି ଲାଳେଇଯାଏ । ଜିଭ ଖଲ ଖଲ ହୁଏ । ଆପଣା ଆପଣା ଭିତରେ ତାକୁ ନେଇ ପଦେ ଦି' ପଦ ମୁଖରୋଚକ ଚର୍ଚ୍ଚା କରିଦିଅନ୍ତି । ବେଳେବେଳେ ସୁଲି କାନରେ ବି ପଦେ ଦି' ପଦ ସେଥିରୁ ପଡ଼ିଯାଏ । ପଥର କରିଦିଏ ଦେହଟାକୁ ସୁଲି । ତା' ପଛରେ ହାଲୁ ହାଲୁ ହେଉଥିବା ମଣିଷମାନଙ୍କୁ ଆଡ଼ ଆଖିରେ ବି ସେ ଚାହେଁ ନାହିଁ । ପାଦର ଗତି ଆଉ ଟିକେ ସେ କ୍ଷିପ୍ର କରେ । ପାହୁଣ୍ଡ ସବୁ ଆଉ ଟିକେ ଲମ୍ବା ଲମ୍ବା ହୋଇଯାଏ । ବାହୁ ଦୁଇଟା ବି ଅନୁରୂପ ଭାବରେ ଆଗକୁ ପଛକୁ ଦୋହଲୁଥାଏ ।

ଟୋକାଏ କହନ୍ତି- ମେଢ଼ । ସୁଲି ମେଢ଼ ଆସୁଛି, ରାସ୍ତା ଛାଡ଼, ରାସ୍ତା ଛାଡ଼ ।

ସେ ମନେ ମନେ ହସେ । ବିରକ୍ତ ହୁଏ ନାହିଁ । ବେଳେବେଳେ ଗତି ଟିକେ ଧିମେଇ ଦେଇ ନିରୀହ ଅଖାଡୁଆ ପିଲାମାନଙ୍କ ମୁହଁକୁ ଚାହେଁ । ଡରିଯାଆନ୍ତି ସେମାନେ । କେହି କେହି ମୁହଁଲୁଚା ଦିଅନ୍ତି । ଚାହିଁଲେ ସିଏ ଏଇ କ୍ଷୀରଖିଆ ଛତରା ଛୁଆମାନଙ୍କର ଗାଲ ଟିପିଦେଇ ଭଲ ମନ୍ଦ ଦି'ପଦ ଶୁଣେଇ ଦେଇପାରନ୍ତା । ସେମାନଙ୍କ ବାପା କକାମାନଙ୍କ ଉପରେ ଥିବା ରାଗ ଏଇଠି ସୁଝେଇ ଦିଅନ୍ତା । ସେ କିନ୍ତୁ ସେୟା କରେ ନାହିଁ । ଛେପ ଢୋକେ, ଯାହାର ମୂଳ ମୂଳଦୁଆ ତେଢ଼ା ସେଠୁ ଆଉ କି ପ୍ରକାର ଫଳ ଆଶା କରିବ ? ଏ ଛୁଆଗୁଡ଼ାଙ୍କୁ ସେ ଦୋଷ ଦେଇପାରେ ନାହିଁ, ଦୟା ଆସେ । ତା' କଇଁଫୁଲିଆ ହସରୁ ଟିକେ ଫିଙ୍ଗିଦିଏ ସେମାନଙ୍କ ଉପରକୁ, ଉତ୍ସାହିତ ହୁଅନ୍ତି ଟୋକାଗୁଡ଼ାକ । ଉପରେ ପଡ଼ି ଦି'ଚାରି ପଦ କଥା ଯୋଡ଼ନ୍ତି । ସୁଲି ବି କମ୍ ନୁହେଁ, ଟାହୁଲି ଟାପରାରେ ଜବାବ ଦିଏ । ଥଣ୍ଡା ହୋଇଯାଆନ୍ତି ସେମାନେ ।

ସେ ମାନ କରିବ କାହାକୁ ? ଯାହା ହାତ ଧରି ସେ ଏ ଗାଁକୁ ଆସିଥିଲା, ଯିଏ ତାର ଆବ୍ରୁ ଆବରଣ, ସିଏ ତ ପେଟ ଡାକରାରେ ଗଲା ଦାଦନ ଖଟିବାକୁ । ବର୍ଷେ ଦୁଇ ବର୍ଷରେ ଥରେ ଆସେ । ଚାରି ଚାରିଟା ପିଲାଙ୍କୁ ନେଇ ସେ ଏଇ ଗାଁରେ କାହାକୁ ଦାଦା, କାହାକୁ ଭାଇ, କାହାକୁ ମଉସା, କାହାକୁ ମାଉସୀ, କାହାକୁ ପିଉସୀ କରି ମାଟି କାମୁଡ଼ି ପଡ଼ି ରହିଛି । ସତେ ଯେମିତି ସିଏ ଏ ଗାଁର ବୋହୂ ନୁହଁ ଝିଅ । ତା' ସାଙ୍ଗରେ ବାହା ହେଇ ଆସିଥିବା ଭୂଆଷୁଣୀମାନଙ୍କର ମୁଣ୍ଡରୁ ଓଢ଼ଣା ଏ ପର୍ଯ୍ୟନ୍ତ ଭଲକରି ଖସିନି । ଅଥଚ ତା' ପିଲା ପିଚିକାଙ୍କ ଭଲରେ ମନ୍ଦରେ ଗାଁଠୁ ତିନିଗାଁ ପର୍ଯ୍ୟନ୍ତ ସବୁଠି ସେ ବୁଲି ଆଇଲାଣି, ପିଲା ପିଲିଙ୍କ ରୋଗ ବୈରାଗରେ ନଈ ପାର ହେଇ ଡାକ୍ତରଖାନାକୁ ନିଜେ ନଗଲେ ନହୁଏ । ହାଟ ବଜାର ତ କରିବାକୁ ପଡ଼େ । ତା' ବାଦେ ଆହୁରି ସୁବିଧା ଅସୁବିଧା ଅଛି ।

ରଘୁଆ ସିନା ମାସକୁ ମାସ ଟଙ୍କା ପଠେଇଦିଏ, ଘର ଚଳେ କେମିତି ? ନିଅଣ୍ଟିଆ ସଂସାର ହେଲେ ସୁଦ୍ଧା ରଘୁଆ କେବେ ସେମାନଙ୍କୁ ଅଭାବରେ ରହିବାକୁ ଦେଇ ନଥିଲା । ତା'ର କେବଳ ଅଭାବ ଥିଲା ମଣିଷ ବଳର । ସେଇଥିପାଇଁ ସେ ଘର କଣରେ ପଶି ରହୁ ନଥିଲା, ଶିକ୍ଷାଗତ ଦୌଡ଼ ମାତ୍ର ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ହେଲେ ବି ତାର ବୁଦ୍ଧି ଅକଲ ଥିଲା । ଗାଁର ଭଲ ଭଲ ଖାନ୍ଦାନୀ ଝିଅ ବୋହୂଙ୍କ ସହ ସେ ମିଶୁଥିଲା, ଥଟ୍ଟା ତାମସା ବି ହେଇ ପାରୁଥିଲା, ସାଙ୍ଗ ଭଳି ବ୍ୟବହାର କରି ପାରୁଥିଲା । ଗାଁରେ ସୁଲିର ମାନ ମର୍ଯ୍ୟାଦା ବଢ଼ିଯିବାର ଇଏ ଥିଲା ଅନ୍ୟ ଏକ ହେତୁ ।

ସବୁକିଛି ଠିକ୍ ଚାଲିଥିଲା । ସୁଲିର ସଂସାର ଯେମିତି ଚାଲିଥିଲା, ସେମିତି ବି ଋତୁ ପରେ ଋତୁ ଆସୁଥିଲା । ଯିଏ ଯାହାର ଆଧିପତ୍ୟ ବିସ୍ତାର କରି ପୁଣି ଫେରି ଯାଉଥିଲେ । ନଦୀରେ ବନ୍ୟା ଆସୁଥିଲା, ପୁଣି କେବେ ମରୁଡ଼ି । ମା' ଲକ୍ଷ୍ମୀଙ୍କର ଆଶୀର୍ବାଦରେ କୋଉ ବର୍ଷ ଗାଁବାଲା ଖିରୀ ପୁରୀରେ ଭାସୁଥିଲେ ତ ପୁଣି କେବେ ଦି'ବେଳା ଦି'ମୁଠା ପେଟପୂରା ଖାଇବାକୁ ପାଉ ନଥିଲେ । ନିଅଣ୍ଟିଆ ସଂସାରକୁ ସଜାଡୁ ସଜାଡୁ ପୁଣି ରାତି ଚାଲିଯାଇ ସିନ୍ଦୂରା ଫାଟୁଥିଲା ।

କିନ୍ତୁ କ'ଣ ହେଲା କେଜାଣି, ସୁଲିର ହସ ଧୀରେ ଧୀରେ ମଳିନ ପଡ଼ି ଆସିଲା । ତା' ସଂସାର ଉବୁଟୁବୁ ହେଲାଭଳି ମନେହେଲା । ପ୍ରତି ମାସର ଦ୍ୱିତୀୟ ସପ୍ତାହ ବେଳକୁ ରଘୁଆ ପାଖରୁ ଆସୁଥିବା ଯେଉଁ ମନିଅର୍ଡ଼ର ଟଙ୍କାଟା ପୋଷ୍ଟ ପିଅନ ଆଣି ସୁଲିର ବଙ୍କା ତେଢ଼ା ଦସ୍ତଖତ ସହ ସାକ୍ଷୀମାନଙ୍କର ସନ୍ତକ ନେଇ ଦେଇଯାଉଥିଲା, ସେଇଟା ବି ଧୀରେ ଧୀରେ ଧିମେଇ ଆସିଲା । ମାସକରୁ ଦୁଇ ମାସ, ଦୁଇ ମାସରୁ ଚାରି ମାସ, ଚାରିମାସରୁ ବର୍ଷକର ଧାପ ଛୁଇଁଲା । ରଘୁଆର ଟଙ୍କା ନାହିଁ କି ଚିଠି ନାହିଁ । ଛନକା ପଶିଲା ସୁଲି ଛାତିରେ । ତା' କପାଳକୁ ଦଇବ ବି ବାଦ ସାଧିଲା । ଗତବର୍ଷ ବାତ୍ୟାକୁ ଏ ବର୍ଷ ମରୁଡ଼ି । ସତେ ଯେମିତି ପାହାଡ଼ଟାଏ ଭାଙ୍ଗି ପଡ଼ିଲା ତା' ମୁଣ୍ଡ ଉପରେ । ଏ କାଳ ବେଳାରେ ଚାରି ଚାରିଟା ଛୁଆଙ୍କ ମୁହଁରେ ଏକୁଟିଆ ମାଇପିଟା କି ଅଧାର ଦେବ ? ସ୍କୁଲ ପାଠପଢ଼ା, ଛତା ଜୋତା ସବୁ ଚୁଲିକୁ ଯାଉ । ଦୁଇ ବେଳା ଦୁଇ ମୁଠା ପେଟ ପୂରା ଆଧାର ସେ ତାଙ୍କ ମୁହଁରେ ଦେଇ ପାରିଲାନି । ଭୂଆଷୁଣୀଟା କି ଦୁଃଖ ଧନ୍ଦା କରିବ ? ୟା ତକିଆ ତା ମୁଣ୍ଡତଳେ, ତା ତକିଆ ୟା ମୁଣ୍ଡତଳେ ଦେଇ ଦେଇ ବର୍ଷେ ଛ'ମାସ ଚଳିଲା । ଶେଷକୁ ଘରେ ଯାହା ଟିକେ ସୁନାରୂପା ଓ କଂସାବାସନ ଦି'ଖଣ୍ଡ ଥିଲା ବନ୍ଧା ଛନ୍ଦା ବିକାବିକିରେ ସେତକ ବି ସରିଲା । ତଥାପି ଛୁଆମାନଙ୍କର ପେଟ ଅପୂରା ରହିଲା । ସୁଲିକୁ ଚତୁର୍ଦ୍ଦିଗ ଅନ୍ଧାର ଦେଖାଗଲା । ଗାଁ ଗାଉଁଲି କଥା । ମୂଲପାତି ବା ମିଳିବ କେତେ ? ୟା ଘରେ ଦୁଃଖ ଧନ୍ଦା, ତା'ଘରେ ଦୁଃଖ ଧନ୍ଦା କରି ପିଲାଙ୍କ ମୁହଁରେ ଦେଲା । ଦିନେ ଖାଇଲେ ଦୁଇବେଳା ଉପାସ । ତା'ରି ଆଗରେ ହନ୍ତସନ୍ତ ହେଲେ ଛୁଆଗୁଡ଼ାକ । ସୁଲି ଆଖିରୁ ଲୁହ ଶୁଖିଲାନି ।

ଦିନେ ହଠାତ୍ ଗାଁ ସାରା ରାଷ୍ଟ୍ର ହେଇଗଲା, ସୁଲି ପାପଗର୍ଭା । ଏକ ଜବରଦସ୍ତ ମସଲାଦାର ଖବର ମିଳିଗଲା ସମସ୍ତଙ୍କ ପାଇଁ । ଗାଧୁଆ ତୁଠରୁ ଖବରଟା ବ୍ୟାପିଯାଇ ଚଉପାଢ଼ୀରେ ପହଞ୍ଚିଗଲା । ସମସ୍ତଙ୍କ ପାଇଁ ଏହା ଥିଲା ଏକ ଉତ୍ତେଜକ ଉପାଖ୍ୟାନ । ଓରମାନ ମେଣ୍ଟାଇବାର ମଉକା । ଗାଁ ପଡ଼ିଲା ଉଠିଲା । ଯେଉଁମାନଙ୍କ ପାଇଁ ସୁଲି ଅପହଞ୍ଚ ଇଲାକା ଥିଲା, ଯେଉଁମାନେ ଲାଳସା

ଚରିତାର୍ଥ କରିବାକୁ ଯାଇ ନୟାନ୍ତକ ହେଇ ତା ପାଖରୁ ଠୋକର ଖାଇ ଫେରିଥିଲେ, ଯେଉଁମାନଙ୍କ ମନରେ ତା' ପାଇଁ ନିଆଁ ଜଳୁଥିଲା, ତା ବେପରୁଆ ଭାବଭଙ୍ଗୀରେ ଯେଉଁମାନେ ତାକୁ ଆଖି ଟେକି ଚାହିଁ ବି ପାରୁ ନଥିଲେ, ସମସ୍ତେ ଏକଜୁଟ ହେଇଗଲେ । ଏଇଥର ବଜ୍ଜାତ ମାଇକିନାଟାକୁ ପାନେ ଦେବାକୁ ହେବ । ସମସ୍ତଙ୍କୁ ଜଳେଇ ପୋଡ଼େଇ ନିଜେ ସତୀ ଦେଖେଇ ହଉଥିଲା ବାରବୁଲୀ ଛତରଖାଇ । ଏଇଥର ଅଠାକାଠି ପିଞ୍ଜରାରେ ପଡ଼ିଛି, ଯିବ କୁଆଡ଼େ... ?

ଚାରିଆଡ଼େ ଫୁସ୍‌ରୁ ଫାସର୍, ଟୁପୁର୍ ଚାପର୍ । ସମସ୍ତେ ଜଗିଲେ ତାକୁ ଗୋଡ଼େ ଗୋଡ଼େ । କାଳେ କେଉଁଠି କ'ଣ କରି ସେ ପାପଟାକୁ ଖଲାସ କରିଦେବ । ପୁଣି ଗାଁ ଲୋକଙ୍କ ଆଖିରେ ଶୁଖୁଆ କଣ୍ଟା ଖେଞ୍ଚି ନିଜେ ସତୀ ବୋଲେଇହବ... ।

ତୁରନ୍ତ ଚଉପାଢ଼ୀରେ ନିଶାପ ବସିଲା । ସୁଲିକୁ ଯିଏ ଯେତେ ଯାହା ପଚାରିଲେ ସେ କାହାରି କୌଣସି ପ୍ରଶ୍ନର ଉତ୍ତର ଦେଲାନାହିଁ । ତା' ପାଟିରେ ଯେମିତି ଅବାଜକ ପଡ଼ିଗଲା । ସେ ପାଲଟିଗଲା ଦାରୁଭୂତ ମୁରାରି । ଚଉପାଢ଼ୀରେ ବସିଥିବା ମୁଣ୍ଡିଆଳମାନେ ଅସହିଷ୍ଣୁ ହୋଇଉଠିଲେ । ଶ୍ଳୀଳ ଅଶ୍ଳୀଳ ଉଭୟ ଭାଷା ପ୍ରୟୋଗ କଲେ । ମନର ଓରମାନ୍ ମେଣ୍ଟାଇବାକୁ ଯାଇ ଯା-ଛା' ତା ବକିଲେ । ଲୁହ ଡବଡବ ଆଖିରେ ସେ ଥରେ କେବଳ ସେମାନଙ୍କ ମୁହଁକୁ ଚାହିଁଦେଇ ମୁଣ୍ଡ ତଳକୁ କଲା । ତୁଣ୍ଡ ଖୋଲିଲା ନାହିଁ ।

ଶେଷରେ ଚଉପାଢ଼ୀରେ ନିଷ୍ପତ୍ତି ନିଆ ହେଲା, ଇୟେ ଭଲରେ ଭଲରେ ମାନିବା ଜନ୍ତୁ ନୁହେଁ । ପାପଟା ପାଚି ଫଳି ପଦାକୁ ଆସୁ । ସେଇ ପାପ ପସରା ମୁଣ୍ଡେଇ ଯେତେବେଳେ ସେ ବାରଦ୍ୱାର ଶୁଣ୍ଢୀ ପିଣ୍ଡା ହେବ, ସେତେବେଳେ ତା ଅଣ୍ଟା ଭାଙ୍ଗିବ । ଗାଁ ଦାଣ୍ଡରେ ସେ କେମିତି ମୁଣ୍ଡଟେକି ବାଟ ଚାଲିବ, ସେତେବେଳେ ଦେଖାଯିବ ।

ତା' ଦୁଆରେ ଗାଁ ଚୌକିଦାର ପହରା ଦେଲା, ଉତ୍କଣ୍ଠିତ ଜନତା ଅପେକ୍ଷା କଲେ, ଏକ ନିଶ୍ଚିତ ଓ ସମ୍ଭାବ୍ୟ ପରିଣତି ପାଇଁ ।

ତାକୁ ନିଆଁ ପାଣି ବନ୍ଦ ହେଲା । ବାସନ୍ଦ ହେଇ ସେ ରହିଲା, ଏକ ଘରକିଆ ହୋଇ । ପିଲାଛୁଆ ଉପାସ ଭୋକେ ସଢ଼ିଲେ ।

ମଣିଷ ସିନା ତାକୁ ଦାଉ ସାଧିଲେ । କିନ୍ତୁ ବିଧାତାର ବିଚାର ଥିଲା ଅନ୍ୟ ପ୍ରକାର । ହଠାତ୍ ଦିନେ ରାତିରେ ସେମିତି କିଛି କାରଣ ନଥାଇ ବି ସୁଲି କଷ୍ଟ ପାଇଲା । ସାତ ମାସର ମଲାପିଲାଟା ଖସି ପଡ଼ିଲା ଆପେ ଆପେ ।

ଦାଣ୍ଡ ଦୁଆର ମୁହଁରେ ଖଣ୍ଡିକାଶ ମାରି ଚୌକିଦାର ଖଇନି ଦଳୁଥିଲା । ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲା, କ'ଣ କରିବ ଏ ମଲା ପିଣ୍ଡଟାକୁ.. ? ରାତି ପାହିଲେ ତ ଗାଁ ସାରା ଚହଳ ପଡ଼ିଯିବ... । କିଏ ଜାଣେ ପୁଣି କି ବିପତ୍ତି ଘନେଇ ଆସିବ ତା ଉପରେ ?

ସତକୁ ସତ ରାତି ପାହୁ ନପାହୁଣୁ ଏ ଖବର ବ୍ୟାପିଗଲା ଗାଁ ସାରା । ତା ଦୁଆର ମୁହଁରେ ଲୋକ ଥାଟ ପଟାଳି ଭାଙ୍ଗିଲେ । ମଲା ପିଣ୍ଡଟାକୁ ଛିଣ୍ଡା କନାରେ ଗୁଡ଼େଇ ଧରି ସେ ସେମିତି ଉହଳ ବିକଳ ହେଉଥାଏ । ଥାନାରେ ଖବର ଦିଆହେଲା । ସେ ଶିଶୁ ସନ୍ତାନର ତଣ୍ଟି ଚିପି ହତ୍ୟା କରିଛି । ପ୍ରମାଣ ସହ ତାକୁ ପୋଲିସ୍ ହାତରେ ଧରେଇ ଦିଆଗଲା ।

ଥାନାବାବୁ ବୋଧହୁଏ ଟିକେ ଉଦାର ସ୍ୱଭାବର ଥିଲେ କି କ'ଣ, ଘଟଣାଟିକୁ ଟିକିନିଖି ତନଖି କ'ଣ ବୁଝିଲେ କେଜାଣି, ଏହାକୁ ଆଉ ଆଗକୁ ବଢ଼ିବାକୁ ନଦେଇ ଛୁଆର ଶବଟିକୁ ସତ୍କାର କରିଦେବା ପାଇଁ ଆଦେଶ ଦେଲେ । ତଥାପି ସୁଲିକୁ ଟିକେ ନାଲି ଆଖି ଦେଖାଇବା ପାଇଁ ଭୁଲିଲେ ନାହିଁ ।

X X X X

ସୂତାକଳରେ ଧୂଳି ଧୂଆଁର ପ୍ରଭାବରେ ଯକ୍ଷ୍ମାରୋଗରେ ପୀଡ଼ିତ ହୋଇଥିବା ରଘୁ ହାସ୍‌ପାତାଳରୁ ମୁକ୍ତ ହୋଇ ବସାଘର କବାଟ ଖୋଲିଲା ବେଳକୁ ଗାଁ ସରପଞ୍ଚ ଦେଇଥିବା ଚିଠିଟା ପାଇଲା । ଆଉ ମୁହୂର୍ତ୍ତେ ବିଳମ୍ବ ନକରି ସେଇ ସଙ୍ଗେ ସଙ୍ଗେ ସେ ଫେରିଆସିଲା ଗାଁକୁ ।

ଏବେ ସମସ୍ତେ ଅପେକ୍ଷା କରିଥିଲେ ରଘୁର ନିଷ୍ପତ୍ତିକୁ । ଚରିତ୍ରହୀନା ସୁଲିକୁ ସେ କି ଶାସ୍ତି ଦେବ । ଛାଡ଼ପତ୍ର ଦେବ, କି ଗାଁ ପଞ୍ଚ-ପରମେଶ୍ୱରଙ୍କ ଆଗରେ ଗଳବସ୍ତ୍ର ହୋଇ କ୍ଷମା ମାଗିବାକୁ ବାଧ୍ୟ ହେବ, ନା ଦଣ୍ଡ ଜୋରିମାନା ଦେଇ ପ୍ରାୟଶ୍ଚିତ୍ତ କରି ପୁଣି ଜାତିରେ ମିଶିବ.... ? ପିଲାକାଳୁ ତ ରଘୁଆଟା ଥିଲା ଭାରି ହାଣୁଆ/ ଅଖାଡୁଆ । ଯଦି ତା ମୁଣ୍ଡକୁ ପିତ୍ତ ଚଢ଼ିଲା ତ ସେ ଠିଆ ଫାଡ଼ିଦେବ ସୁଲିକୁ ।

ସମସ୍ତଙ୍କ ମନରେ ଉତ୍କଣ୍ଠା, ଆତଙ୍କରେ ଥରହର । ସଂଧ୍ୟାରେ ଚଉପାଢ଼ୀରେ ନିଶାପ ଡକାହେଲା, ଗାଁ ଚୌକିଦାର ଆସି ଦାଣ୍ଡ ଦୁଆରେ ଠିଆ ହୋଇ ଡାକ ଦେଲା-

ରଘୁଆଇ ! ସଂଜବେଳକୁ ଚଉପାଢ଼ୀରେ ନିଶାପ ହେବ, ତୋ ସ୍ତ୍ରୀକୁ ଧରି ଆସିବୁ ।

ଘର ଭିତରେ ସାନ ପୁଅର ଛିଣ୍ଡା ସାର୍ଟ ଖଣ୍ଡକରେ ବୋତାମ ଲଗାଉଥିଲା ରଘୁ । ସେଇ ଘର ଭିତରୁ ସେ ଗମ୍ଭୀର ହୋଇ କେବଳ 'ହୁଁ'ଟିଏ ମାରି ଜବାବ ଦେଲା । ଚୌକିଦାର ଫେରିଗଲା ।

ଦିନସାରା ରଘୁ ଗୁମ୍‌ସୁମ୍ ଦିଶୁଥିଲା । ଆସିଲା ବେଳୁ ସୁଲିକୁ କଥା ପଦେ ସୁଦ୍ଧା କହିନାହିଁ । ସୁଲି ବି ଭରସି ମୁହଁ ଟେକି ତା ମୁହଁକୁ ଚାହିଁ ପାରୁ ନଥିଲା । ଘରେ ପାଦ ଦେଲା ପରଠୁଁ କେବଳ ସେଇ ପିଲାଙ୍କ ପଛରେ ଲାଗିଛି । ନଈ ତୁଠକୁ ନେଇ ସୁରାଟରୁ ଆଣିଥିବା ସାବୁନ୍‌ରେ ସେମାନଙ୍କ ଦେହକୁ ଘଷିମାଜି ମଇଳା ଛଡ଼ାଉଥିଲା । କୋଉ ଯୁଗରୁ ଜମି ରହିଥିବା ମଳି କୋଚଟା ଜାମାପଟାକୁ କାଚି ସଫା କରୁଥିଲା । ଚିରା ଜାଗାସବୁ ଛୁଞ୍ଚି ସୂତାରେ ସିଲେଇ କରୁଥିଲା । ଅନ୍ଧାରିଆ ଘରର ଗୋଟିଏ କୋଣରେ ଜମା ହୋଇଥିବା ପିଲାମାନଙ୍କର ସ୍କୁଲ ବହି ସବୁ ସଜେଇ ରଖୁଥିଲା ।

ରଘୁର ଏ ହାବ-ଭାବ ଭୟ ଓ ଆଶଙ୍କାରେ ସୁଲି ସାଙ୍କୁଡ଼ି ହେଇ ଯାଉଥିଲା । ଚଉପାଢ଼ୀର ବିଚାରଣାକୁ ତାର ଖାତିର ନଥିଲା । ପୋଲିସ୍‌ର ଦଣ୍ଡକୁ ତାର ଭୟ ନଥିଲା । ପିଲାଙ୍କ ମୁହଁରେ ଆଧାର ଟିକେ ଦେବାପାଇଁ ସେ ଯାହା କରିଛି, ସେଥିପାଇଁ ତା' ବିବେକ ମଧ ତାକୁ ଦଂଶୁ ନଥିଲା । ସେ ଅପେକ୍ଷା କରିଥିଲା ରଘୁର ଶେଷ ନିଷ୍ପତ୍ତିକୁ । ଯେଉଁ ଦଣ୍ଡରେ ସେ ତାକୁ ଦଣ୍ଡିତ କରିବ ସେ ତାକୁ ମୁଣ୍ଡ ପାତି ଗ୍ରହଣ କରିନେବ । ତାର ପିଲାଙ୍କ ଜୀବନ ବଞ୍ଚେଇବା ପାଇଁ ସେ ଅସତୀ ହୋଇଛି, ତା ଗଳାରେ ଛୁରୀ ଚଲେଇ ଦେଲେ ସେ ବେକ ଦେଖେଇଦେବ, ଦେଶାନ୍ତରୀ ପାଇଁ ଆଦେଶ ଦେଲେ ତା ଛୁଆଙ୍କୁ ତାରି ଜିମା ଦେଇ ନିଧଡ଼କରେ ସେ ଦୁନିଆ ଛାଡ଼ି ଚାଲିଯିବ, କିଛି ଓଜର ଆପତ୍ତି କରିବ ନାହିଁ । କିନ୍ତୁ ଲୋକଟା ଯେ ନିଦାବିଷ୍ଟୁ ପାଲଟି ଯାଇଛି, ଥମ୍ ଥମ୍ ହେଇ ରହୁଛି । ଭାରି ବାଧୁଥିଲା ସୁଲିକୁ, ଅସହାୟ ବୋଧ କରୁଥିଲା ନିଜକୁ ।

ଅବଶେଷରେ ସେଇ ବହୁ ଉତ୍‌କଣ୍ଠିତ ମୁହୂର୍ତ୍ତ ଆସିଲା । ସୁଲି ଭାବୁଥିଲା ନିଶାପକୁ ଗଲାବେଳେ ସେ ତାକୁ ସାଙ୍ଗରେ ନବ । ରଘୁ କିନ୍ତୁ ସେୟା କଲା ନାହିଁ । ସୁଲି ଉଦ୍ଦେଶ୍ୟରେ ପ୍ରଥମ କରି ମୁହଁ ଖୋଲି ସେ କହିଲା-

'କବାଟଟା ଭିତରୁ ଦମ୍ଭକରି ବନ୍ଦକରି ତୁ ଭିତରେ ଥା', ମୁଁ ଆସୁଛି ।'

ତା'ପରେ ଲମ୍ବା ଲମ୍ବା ପାହୁଣ୍ଡ ପକାଇ ଚଉପାଢ଼ୀ ଆଡ଼େ ମୁହାଁଇଲା । ସେତେବେଳକୁ ପ୍ରାୟ ସବୁ ମାମଲତ୍‌କାରମାନେ ଚଉପାଢ଼ୀରେ ରୁଣ୍ଡ ହୋଇ ସାରିଥିଲେ । ଦେଖଣାହାରୀ ଯେ ଯାହା ଜାଗାରେ ଉତ୍ସୁକ ଦୃଷ୍ଟିରେ ଚାହିଁ ରହିଥିଲେ । ରଘୁ ସହ

ସୁଲିକି ନଦେଖି ଅବଶ୍ୟ ସେମାନଙ୍କ ଭିତରୁ କିଛି ଲୋକ ନିରୁତ୍ସାହିତ ହୋଇପଡ଼ିଲେ, ତଥାପି ପରିବେଶ ସରଗରମ୍ ହୋଇଗଲା ।

ଚଉପାଢ଼ୀର ବୟୋଜ୍ୟେଷ୍ଠ ହରି ମହାନ୍ତି ପ୍ରଥମେ ତାଙ୍କର ଘାଘଡ଼ା ଗଳାଟା ଖଙ୍କାରି ସାରି କହିଲେ–

''ରଘୁ ! ଇୟେ ହେଲା ଗାଁର ମାନ ମର୍ଯ୍ୟାଦାର କଥା । ଦଶ ଖଣ୍ଡି ମଉଜାରେ ଆମ ଗାଁ ନାଁ ଡାକ୍ । ଏମିତି ଅନୀତି ନୀତିକୁ ଯଦି ଆମେ ପ୍ରଶ୍ରୟ ଦେଇ ଚାଲିଥିବା, ଗାଁରେ ଗୋଟିଏ ଗୋଟିଏ ଅପକୀର୍ତ୍ତି ବଢ଼ି ବଢ଼ି ଚାଲିଥିବ । ଦଶଖଣ୍ଡି ମଉଜାରେ ଆମେ ମୁହଁ ଦେଖେଇ ପାରିବାଟି.... ?

...ତୋ ସ୍ତ୍ରୀ ତୋ ମୁହଁରେ କାଳି ବୋଳିଛି । ପଞ୍ଚ ପରମେଶ୍ୱରଙ୍କୁ ଅବଜ୍ଞା କରିଛି, ଗାଁର ମାନମର୍ଯ୍ୟାଦା ତଳେ ପକେଇଛି, ତୁ ତାକୁ ଛାଡ଼ପତ୍ର ଦେବୁ । ପଞ୍ଚଙ୍କ ନିଷ୍ପତ୍ତି ଅନୁସାରେ ଆସନ୍ତା ବର୍ଷ ଗାଁ ଚାନ୍ଦା ଭେଦାରେ ତୋର ନୂଆ ସଂସାର କରିବୁ, ନଚେତ୍ ଗାଁ ଠାକୁରାଣୀଙ୍କୁ ଦଶହଜାର ଟଙ୍କା ଓ ଗାଁ ବାଲାଙ୍କୁ ଭୋଜି ଭାତ ଦେଇ, ଜାତି ହେଇ ସୁଲିକୁ ନେଇ ଘର କରିବୁ । ଯାହା ତୋର ଇଚ୍ଛା.... ।''

ଚଉପାଢ଼ୀ ତଳେ ଗୋଟିଏ କୋଣକୁ ସଂକୁଚିତ ହୋଇ ବସିଥିବା ରଘୁଆ ହୁ'ଦସ୍ତ ଉଠି ପାଳଭୂତ ଭଳି ଠିଆ ହୋଇଗଲା । ପାଞ୍ଚହାତି ମର୍ଦ୍ଦଟା ସେ । କଳା କିଟି କିଟି ନିଦା ମୁଗୁନି ପଥର ଭଳି ରଙ୍ଗ । ଦୀର୍ଘଦିନ ବେମାରରେ ସଢ଼ି ସଢ଼ି ଆଖି ଦୁଇଟା ଭିତରକୁ ପଶିଯାଇଛି । ମୁହଁସାରା ରୁଢ଼ଭର୍ତ୍ତି । ସେ ଦିଶୁଥିଲା ଜୀଅନ୍ତା ଭୂତ ଭଳି । ଯେଉଁ ଠାଣିରେ ସେ ଠିଆହେଲା, ତାକୁ ଦେଖି ନ୍ୟାୟକାରୀମାନେ ଟିକେ ଶଙ୍କିଗଲେ । ଦୁଇଥର ଫଁ ଫଁ ନିଶ୍ୱାସ ନେଇ ସାରି କାଳିସି ଲାଗିଲା ଭଳି ସେ ମାତି ଉଠିଲା– ''ଥାଉ ହୋ ତମର ନ୍ୟାୟ ବିଚାର । କୋଉଠି ଥିଲା ତମ ଭଦ୍ରଲୋକୀ ପଣ, ଯେତେବେଳେ ମୋ ତିର୍ଲାଟା ତା ଛୁଆମାନଙ୍କ ତୁଣ୍ଡରେ ମଣ୍ଡ ଟିକେ ଦେବାପାଇଁ ଦୁଆର ଦୁଆର ଠୋକର ଖାଉଥିଲା, ଦି' ବରଷ କାଳ ମୁଁ ସେଠି ରାଜଯକ୍ଷ୍ମାରେ ପଡ଼ି ମରଣ ଯନ୍ତାରେ ସଢୁଥିଲି । ଝଡ଼ା ଦି'ବରଷ ମୁଁ ତାକୁ ପଇସାଟିଏ ଦେଇନି । କୋଉ ଅସରପି ମୁଁ ଥାପି ଦେଇ ଯାଇଥିଲି ଯେ, ସେ ତାକୁ ବିକି ଭାଙ୍ଗି ମୋ ପିଲାଙ୍କ ମୁହଁରେ ଦେଇଥାନ୍ତା । ସିଏ ଯଦି ଅସତୀ ହେଇଛି, ଇଜ୍ଜତ ହରେଇଛି, ସବୁ ମୋରି ପିଲାଙ୍କ ପାଇଁ । ମୋ ସ୍ତ୍ରୀକୁ ମୋ ଠୁଁ ଅଧିକ କିଏ ଜାଣିଛି ହୋ ! କେତେ ନେହୁରା ହେଇ କେତେ ବିକଳ ହେଇ ସେ ମୋ ପାଖକୁ ଗଦା ଗଦା ଚିଠି ଲେଖିଛି । ପିଲାଙ୍କ ପାଠ ପଢ଼ା, ପିଲାଙ୍କ ରୋଗ ବୈରାଗ, ପିଲାଙ୍କ ପେଟ ପାଟଣା ମୁଁ ତାର କିଛି ଖର୍ଚ୍ଚ ତୁଲେଇ ପାରିନାହିଁ । ଚିଠି ଖଣ୍ଡେ ଦେଇ ଆଶ୍ୱାସନା ପଦେ ବି ଦେଇପାରିନି । କ'ଣ

ଲେଖିଥାନ୍ତି ତାକୁ... ? ମୁଁ ମରଣ ଶେଜରେ ପଡ଼ିଛି, ସେଥିପାଇଁ ପଇସା ପଠେଇ ପାରୁନି । ଏ କଥା ଶୁଣିଥିଲେ ସେ ଦେହ ଧରି ରହିଥାନ୍ତା ? ମୋ ଛୁଆ ଅନାଥ ହେଇଯାଇଥାନ୍ତେ । ମୁଁ ମଲି କି ଗଲି ତାର ଖବର ରହିଲା ନାହିଁ ତା ପାଖରେ । କ'ଣ କରିଥା'ନ୍ତା ଏକୁଟିଆ ସ୍ତ୍ରୀ ଲୋକଟା ଏଡ଼େବଡ଼ କାଳ ମହରଗରେ ?' ଏକା ନିଶ୍ୱାସକେ ଏତକ କହିଦେଇ ସେ ଟିକେ ଦମ୍ ନେଲା । କାନ୍ଧରେ ଲମ୍ବାଇଥିବା ଗାମୁଛାଟିକୁ ଆଣି ଅଣ୍ଟାରେ ଭିଡୁ ଭିଡୁ ସେ ପୁଣି କହିଲା, 'ମୁଁ ସୁଲିକୁ ଛାଡ଼ପତ୍ରଦେଲେ ଚାନ୍ଦା ଭେଦା କରି ତମେମାନେ ମୋ ବାହାଘର କରିଦେବ, ଏତେ ଯଦି କାଢ଼ପଣ ଥିଲା ଚାନ୍ଦା ଆଦାୟ କରି ମୋ ପିଲା ମାଇକିନାକୁ ବର୍ଷେ ଛ'ମାସ ଚଳେଇ ପାରିଲ ନାହିଁ ? ଶେଷକୁ ସେ ଇଜ୍ଜତ ବିକିଲା, ତମେ ସବୁ ନାଟ ଦେଖିବା ପାଇଁ ମୋ ଉପରେ ଦାଉ ସାଧୁଛ ।

– ଏ.... ଖବରଦାର ! ଆଉ ପଦେ ଯଦି କେହି ମୋ ସ୍ତ୍ରୀ ନାଁରେ ଉଠେଇଛ, ମୁଁ କାହାରି ଓକର ରଖିବି ନାହିଁ । ସଫା ସଫା କହିଦେଉଛି । ଗୋଟା ଗୋଟା ଫାଡ଼ିଦେବି.... ।''

ଦେଖଣାହାରୀ ସ୍ତବ୍ଧ । ପଞ୍ଚ–ପରମେଶ୍ୱର କିଂକର୍ତ୍ତବ୍ୟ ବିମୂଢ଼, କାହାରି ମୁହଁରେ କଥା ପଦେ ନାହିଁ ।

ରଘୁଆ ତମ୍ ତମ୍ ହେଇ ଘରମୁହାଁ ହେଲା । ସୁଲି ଡରି ଡରି କବାଟ ଖୋଲିଲା । ମନ ଭିତରେ ଅନେକ ଭୟ ଆଶଙ୍କା ଓ ଉଦ୍‌ବେଗ.... ।

ତଳେ ଛିଣ୍ଡା କତରାରେ ନିଶ୍ଚିନ୍ତରେ ଶୋଇ ଯାଇଥିବା ପିଲାମାନଙ୍କ ମୁଣ୍ଡ ପାଖରେ ଭୂଇଁଟା ଉପରେ ରଘୁଆ ବସି ପଡ଼ିଲା । ଏଇମାନେ ତାର ପିତୃତ୍ୱର ପସରା, ଏଇ ତା'ର ଭରପୂର ସଂସାର । ଏଇମାନଙ୍କ ମୁହଁରେ ହସ ଟିକେ ଫୁଟେଇବା ପାଇଁ ସେ ଦାଦନ ଯାଇଥିଲା । କିନ୍ତୁ ସବୁ ଓଲଟ ପାଲଟ ହେଇଗଲା । ପିଲାମାନେ ବାର ହୀନସ୍ତା ହେଲେ । ସଂସାର ଉଜୁଡ଼ି ଯାଉ ଯାଉ କଳେ ବଳେ କୌଶଳେ ସୁଲି ତାକୁ ତା ଛିଣ୍ଡା ପଣତରେ ଗଅଁଠେଇ ଧରି ରଖିଛି । ଛୁଆମାନଙ୍କର ଫୁଙ୍ଗୁଳା ଦେହ ଓ ନୁଖୁରା ବାଳ ଉପରେ ସେ ତା ପାପୁଲି ବୁଲେଇ ଆଣିଲା ।

ସୁଲି ଖୁଣ୍ଟଟା ପରି କବାଟକୁ ଆଉଜି ଠିଆ ହେଇଥିଲା, ରଘୁଆ ମୁହଁ ଟେକି ତା' ମୁହଁକୁ ଚାହିଁଲା । ନିଃଶବ୍ଦରେ ଧାର ଧାର ଲୁହ ତା' ଦୁଇ ସୁନ୍ଦର ପଦ୍ମ ପାଖୁଡ଼ା ପରି ଆଖିରୁ ଗଡ଼ି ଆସି ଗାଲ ଉପର ଦେଇ ଛାତି ଭିଜେଇ ଦେଉଛି । ତାର ପିଛିଲା ଦିନର ସବୁ କର୍ମ ଓ ଅପକର୍ମ ଯେମିତି ସେଇଥିରେ ସବୁ ଧୋଇ ହେଇଯାଉଛି । ଓଠରେ ଭାଷା ନାହିଁ । ଭାବରେ ଉବୁଟୁବୁ ତାର ସମଗ୍ର ସତ୍ତା । ରଘୁ ଆଉ ନିଜକୁ ସମ୍ଭାଳି ପାରିଲା

ନାହିଁ । ପିଲାଙ୍କ ପାଖରୁ ଉଠିଯାଇ ସୁଲିକୁ ଆଉଜେଇ ଆଣିଲା ନିଜ ଚଉଡ଼ା ଛାତି ଆଡ଼କୁ । ତା ଆଖିରୁ ଲୁହ ପୋଛି, ତା ଅଲରା ବାଳକୁ ସଜାଡୁ ସଜାଡୁ କହିଲା- 'ପଛକଥା ସବୁ ମନରୁ ପୋଛି ପକାଲୋ । ପୋଛି ପକା.... । ବିଦେଶରେ ପଡ଼ି ପଡ଼ି ମରି ଯାଇଥିଲେ କୋଉ କାଳୁ ତୁ ହାତରୁ ଚୁଡ଼ି କାଢ଼ି ସାରନ୍ତୁଣି, ମୁଣ୍ଡରୁ ସିନ୍ଦୂର ପୋଛି ସାରନ୍ତୁଣି, ତୋରି ଧର୍ମବଳ ଟିକକ ପାଇଁ ମୁଁ ପୁଣି ତୋ ପାଖକୁ ଫେରି ଆସିଛି ।'

ସୁଲି ତା ପାଟିରେ ହାତ ଚାପି ଚିତ୍‌କିରେଇ ଉଠି କହିଲା- ସେ ଅସନା କାଳ କଥାଗୁଡ଼ା ମୁହଁରେ ଧର ନାହିଁ ଜମା ! ତମକୁ ମୋ ରାଣ, ଆହୁରି କେତେ କ'ଣ ଅକୁହା କଥା ସେ କହିବ ବୋଲି ଚାହୁଁଥିଲା । କିନ୍ତୁ ଭାବର ଆବେଗ, କଣ୍ଠର କୋହ ଓ ଆଖିର ଲୁହ ତାକୁ କିଛି କହିବା ପାଇଁ ଦେଲାନାହିଁ । ସେ କେବଳ କଇଁ କଇଁ ହୋଇ କାନ୍ଦି ଉଠିଲା । ଯୁଗ ଯୁଗ ଧରି ପଥର ପାଲଟି ଯାଇଥିବା ପାଷାଣୀ ଅହଲ୍ୟା ଶ୍ରୀରାମଚନ୍ଦ୍ରଙ୍କ ପଦସ୍ପର୍ଶରେ ଜୀବନ୍ୟାସ ପାଇଲା କି ଆଉ !

ଅଯୁତ ଯୁଗର ବ୍ୟବଧାନରେ ଯେମିତି ଦୁଇ ଇପ୍‌ସିତ ତୃଷାର୍ତ୍ତ ଆତ୍ମା ଏକ ହେଇଯାଉଥିଲେ । ସ୍ନେହ, ପ୍ରେମ, ଅନୁରାଗ ଓ ଗଭୀର ବିଶ୍ୱାସରେ ସେ ମିଳନ ହେଇ ଯାଉଥିଲା ମଧୁସ୍ରାବୀ । ସେହି ମଧୁସ୍ରବଣରେ ଏକ ହୋଇ ଯାଉଥିଲେ ଦୁଇଟି ଦେହ ଓ ମନ.... ।



## ଏକ ବାହାଘର ଇତିବୃତ୍ତ

ସକାଳୁ ସକାଳୁ ଫୋନ୍‌ରେ ଏମିତି ଉତ୍ପୀଡକ ସମ୍ବାଦଟିଏ ପାଇଁ ମୁଁ ଆଦୌ ପ୍ରସ୍ତୁତ ନଥିଲି । ହତଭମ୍ବ ହେଇପଡ଼ିଲି ମୁଁ । ବିଗତ ଦିନମାନଙ୍କରେ ଏ ସମ୍ବାଦ ସହ ସଂପର୍କିତ ଘଟିଯାଇଥିବା ଘଟଣା ଗୁଡ଼ିକ ମୋ ଆଖି ଆଗରେ ନାଚି ଉଠିଲେ ।

ଗତ ଖରାଛୁଟିରେ ମୁଁ ଯାଇଥାଏ ବହୁସ୍ମୃତି ବିଜଡ଼ିତ ମୋର ପୁରୁଣା ସହର ରାୟଗଡ଼ା, ମୋ ଅପାଘର । ଜୀବନର କେତେକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ବିତେଇଥିବା ପୁରୁଣା ସହର ପ୍ରତି ଭାବଗତ ସ୍ତରରେ ଆବେଗିକ ଆସକ୍ତି ରହିବା ତ ସ୍ୱାଭାବିକ କଥା, ତାକୁ ଏଡ଼େଇ ଦେଇ ହୁଏ ନାହିଁ, ଏସବୁ ବାଦ୍ ଅପାଝିଅ ମାମୁନୀ ଥିଲା ମୋ ପାଇଁ ଆଉ ଏକ ଆକର୍ଷଣ । ବୟସର ତାରତମ୍ୟ ଓ ସଂପର୍କର ଗୁରୁ ଗମ୍ଭୀରତା ସତ୍ତ୍ୱେ ଆମ ଦୁହିଁଙ୍କ ଭିତରେ ନିବିଡ଼ ଅନ୍ତରଙ୍ଗତା ଥିଲା । ଆମେ ଦୁହେଁ ପରସ୍ପରକୁ ପ୍ରାୟ ବାନ୍ଧବୀ ଭଳି ଅନୁଭବ କରୁ ।

ହଠାତ୍ ଦିନେ ମାମୁନୀ ଧାଇଁ ଧାଇଁ ଆସି ମୁଁ ପଢୁଥିବା ଖବର କାଗଜଟାକୁ ଟାଣି ଫିଙ୍ଗି ଦେଇ ମତେ ଠେଲି ନେଉ ନେଉ ହସିହସି ଗଡ଼ି ଯାଉଥିଲା

ଆଉ କହୁଥିଲା ଚାଲ୍‌, ଚାଲ୍‌ ମାଉସୀ, ତୋ ବରକୁ ଦେଖିବୁ । ପଞ୍ଚୁଆ ତତେ ବାହା ହେବ କହୁଛି ।

ଏତେ ବଡ଼ ଝିଅଟା ହେଲାଣି ସେ ସବୁବେଳେ ଏମିତି । କୌଣସି ପରିସ୍ଥିତିକୁ କେବେ ସିରିୟସ୍‌ ନେବା କଥା ଜାଣିଲାନି । ମୁଁ ବିରକ୍ତ ହେଲି । କୃତ୍ରିମ କ୍ରୋଧରୁ କିଛି ତା ଉପରେ ବର୍ଷି ଦେଉ ଦେଉ ଦେଖିଲି, ଦାଣ୍ଡରେ ଚୁପ୍‌ଚାପ୍‌ ଠିଆ ହେଇଚି ପଞ୍ଚୁଆ । ତାର ସରଳ ନିଷ୍ପାପ ଢଳଢଳ ଆଖି ଦୁଇଟାରେ ମତେ ସେ ଏମିତି ଚାହିଁ ରହିଛି ଯେ ମନେହେଲା ସତେ ଯେମିତି ପୃଥିବୀ ଯାକର ନିରୀହତା ଓ ପ୍ରତ୍ୟାଶା ସେ ଭିତରେ ଉବୁଟୁବୁ ହେଉଛନ୍ତି ।

ମନେପଡ଼ିଲା– ଇଲୁ ସାନଟିଏ ହେଇଥାଏ । ଯେତେବେଳେ ବି ସେ ଆମ ବାହାଘର ବେଳର ଫଟୋ ଦେଖେ ତା ବାପାଙ୍କ ଉପରେ ଭୀଷଣ ରାଗିଯାଇ ତାଙ୍କୁ ଠେଲି ଦେଇ କହେ ବାପା ! ମୁଁ ତ ମାମାକୁ ବାହା ହେଇଥା'ନ୍ତି ତମେ କାହିଁକି ବାହା ହେଲ ଯେ ! ତମେ ବେଶି ଦୁଷ୍ଟ ।

ତା' ବାପା ହସି ହସି ତାକୁ ଦୁଇହାତରେ ଉପରକୁ ଉଠେଇ ନେଇ କହନ୍ତି– ହଉ ବାବା ! ମୋର ଭୁଲ ହେଇଯାଇଛି, ଆଉ ଏବେ କ'ଣ କରିବି ? ତୁ ଜମା ବ୍ୟସ୍ତ ହ'ନା । ତୋ ପାଇଁ ଗୋଟିଏ ସୁନ୍ଦରୀ ଜାପାନୀ କଣ୍ଢେଇ ଆଣିଦେବି ଯେ ତୁ ତାକୁ ବାହାହବୁ ।

ଇଲୁ ଗେହ୍ଲେଇ ହୋଇ କାନ୍ଦିଲା ସ୍ୱରରେ କହେ– ନାଇଁ–ନାଇଁ– । ମୁଁ ମାମାକୁ ବାହାହେବି । ମୁଁ ମାମାକୁ ବାହାହେବି ।

ଇଲୁ ମୋତେ ନେଇ ଭାରି ପୋଜେସିଭ୍‌ । ସେ ଏବେ ସବୁ କଥା ବୁଝିଲାଣି । ବାହାଘରର ପ୍ରକୃତ ଅର୍ଥ ବୁଝୁ ବା ନବୁଝୁ ଥଟ୍ଟା ପରିହାସରେ କେହି ତାକୁ ବାହାଘର କଥା କହିଲେ ସେ ଲାଜେଇବା ଆରମ୍ଭ କଲାଣି ।

କିନ୍ତୁ ବୟସରେ ଯଥେଷ୍ଟ ବଡ଼ ହେଲେ ସୁଦ୍ଧା ପଞ୍ଚୁଆ ଯେ ଇଲୁଠାରୁ ବୁଦ୍ଧିର ପରିପକ୍ୱତାରେ ଢେର ପଛୁଆ ସେ କଥା ବୁଝିବାକୁ ମୋର ଆଉ ବାକି ରହିଲାନି । ବାତ୍ସଲ୍ୟ ମମତାରେ ମୋ ହୃଦୟଟା ତରଳିଗଲା । ମୁଁ ତା ପାଖକୁ ଯାଇ ତା ପିଠି ଥାପୁଡ଼େଇ ଦେଇ କହିଲି, ଛି–ମାଉସୀକୁ କ'ଣ ବାହା ହୁଅନ୍ତି ? ମୁଁ ତୋ ପାଇଁ ଗୋଟିଏ ସୁନାନାକୀ ଝିଅ ଠିକ୍‌କରିଦେବି ଯେ ତୁ ତାକୁ ବାହା ହେବୁ ।

ତା ନାକ କ'ଣ ସୁନା ହେଇଥିବ ? ନିରୀହ କଣ୍ଠରେ ପଚାରିଲା ପଞ୍ଚୁଆ ।

ହଁ– ସୁନାର ନାକରେ ହୀରାର ବସଣି ପିନ୍ଧିଥିବ । ମୁଣ୍ଡରେ ସୁନାର ମୁକୁଟ ଦେଇ ତୋ ସାଙ୍ଗରେ ବେଦୀରେ ବସି ବାହା ହେବ । ମୁଁ ତାର ଓଠକୁ ଟିକେ ହଲେଇ ଦେଇ କହିଲି ।

ପଞ୍ଚୁଆର ଢଳଢଳ ହେଉଥିବା ଦୁଇ ଆଖିରେ ଆଶା, ଅଶ୍ୱାସନା ଓ ଆନନ୍ଦର ଲହରୀଟିଏ ଉବୁକି ଉଠିଲା ଭଳି ମନେହେଲା । ସେ କାହାକୁ କିଛି ନକହି, ଓଠରେ ମେଞ୍ଚାଏ ନିରୀହ ହସ ଖେଳେଇ ଖାଲି କ୍ଷୀର କେନ୍ ଗୁଡ଼ିକଧରି ଚାଲିଗଲା ।

ପଞ୍ଚୁଆ-ପଞ୍ଚାନନ । ୧୬/୧୭ ବର୍ଷର କିଶୋରଟିଏ । ବେଶ୍ ସୁସ୍ଥ ଓ ସବଳ । ବାହାରୁ ଦେଖିଲେ ସେ ଯେ ଅପରିପକ୍ୱ ମାନସିକତା ସମ୍ପନ୍ନ ତାହା ବିଶ୍ୱାସ କରିହେବନାହିଁ । ଚାରି ଭଉଣୀରେ ଭାଇଟିଏ । ବୋଧହୁଏ ସେଇଥିପାଇଁ ତା ମାଆ ତା ନାଁ ଦେଇଥିଲା ପଞ୍ଚୁଆ । ପିଲାଦିନୁ ବାପ ଛେଉଣ୍ଡ । ତା ମାଆ କଷ୍ଟେ ମଷ୍ଟେ ଝିଅ ଚାରିଟାକୁ ଶାଶୁଘର ପଠେଇ ଏଇ ମାନସିକ ଅନଗ୍ରସର ପିଲାଟାକୁ ଆଶ୍ରା କରି ପଡ଼ି ରହିଛି । ଜର୍ସିଗାଈ ଦୁଇଟାରୁ ଯାହା ବାହାରେ ସେଇଥିରେ ମାଆ ପୁଅଙ୍କର ଗୁଜୁରାଣ ମେଣ୍ଟିଯାଏ । ପଞ୍ଚୁଆ ସବୁଦିନ ସକାଳ ନ'ଟା ବେଳେ କ୍ଷୀର ଧରି ଏଇ କଲୋନୀକୁ ଆସେ । ସେ ଆସିଲେ କଲୋନୀର ଆବାଳ ବୃଦ୍ଧ ବନିତା ଚଳ ଚଞ୍ଚଳ ହୋଇ ଉଠନ୍ତି । ତାଙ୍କ ପାଇଁ ମନୋରଞ୍ଜନର ଖୋରାକଟାଏ ମିଳିଯାଏ । ଗଲା ଆଇଲା ସମସ୍ତେ ତାକୁ ଜୋକର ବୋଲି ଭାବି ତା ପଛରେ ଲାଗିଯା'ନ୍ତି । ତା ସାଙ୍ଗରେ ଯେତେ ପ୍ରକାର ଥଟ୍ଟା ହୁଅନ୍ତି ସେ ସବୁର ମୂଳ ସୂତ୍ର ଥାଏ ସେଇ ଗୋଟିଏ, ତାର ବାହାଘର ପ୍ରସଙ୍ଗ । ତା ପାଇଁ ଝିଅଟିଏ ଠିକ୍ କରିଦେବା ଆଶା ଦେଖେଇଲେ ସେ କ୍ଷୀର ଦେବା ସହ ଆଉ ଗୋଟାଏ ଦୁଇଟା ବୋଲହାକ କରିଦିଏ । ତା ପାଇଁ ଝିଅ ଠିକ୍ କରୁଥିବା ବଦାନ୍ୟ ବ୍ୟକ୍ତି ପାଖରେ କୃତ୍ୟ କୃତ୍ୟ ହୋଇଯାଏ । ତା ଦୁଆର ମୁହଁରେ ଘଣ୍ଟା ଘଣ୍ଟା ବସି ରୁହେ ।

ଶେଷରେ ବାଧ୍ୟ ହୋଇ ପ୍ରସ୍ତାବ ଦେଇଥିବା ଭଦ୍ରବ୍ୟକ୍ତିଟି ପ୍ରସଙ୍ଗରୁ ଓହରିଯାଏ । ତାକୁ ଦୂର୍‌ଦୂର୍ ମାର୍‌ମାର୍ କରେ । ସେ ନିରାଶ ହୋଇ ଅନ୍ୟ କାହାର ଆଶ୍ରା ଲୋଡ଼େ । ବିଶେଷତଃ କଲୋନୀର ସ୍ତ୍ରୀଲୋକଙ୍କ ପାଇଁ ଏଇଟା ଥିଲା ଚିତ୍ତବିନୋଦନର ନିତିଦିନିଆ ଦୃଶ୍ୟ ପଟ୍ଟ ।

ପଞ୍ଚୁଆ ସହ ଏଇଟା ମୋର ପ୍ରଥମ ସାକ୍ଷାତ ନୁହେଁ । ଏ ଘଟଣାର ୨/୩ମାସ ପୂର୍ବରୁ ମୁଁ ତାକୁ ପ୍ରଥମ ଥର ପାଇଁ ଏଠି ଭେଟିଥିଲି । ତା ହାତରୁ କ୍ଷୀର କେନ୍‌ଟା ନେଉନେଉ ମାମୁନୀ ମୋ ଆଡ଼କୁ ତା ବାଁ ହାତର ଆଙ୍ଗୁଳି ଦେଖେଇ ପଞ୍ଚୁଆକୁ କହିଥିଲା, ପଞ୍ଚୁଆ ଜାଣିଛୁ ? ଇଯେ ମୋ ମାଉସୀ । ତୋ ପାଇଁ ଝିଅଟିଏ ଠିକ୍ କରିଛି, ତୁ ତାକୁ ବାହା ହବୁ ?

ଆଶା ଓ ବିଶ୍ୱାସର ସହ ସେ ମୋ ମୁହଁକୁ ଟିକେ ଚାହିଁଲା । କି ଭରସା ସେ ସେଠୁ ପାଇଲା କେଜାଣି ସମସ୍ତଙ୍କୁ ବିସ୍ମିତ କରିଦେଇ ସେ କହିଲା-

ମାଉସୀ–ତମ ନାକଟା ବହୁତ ସୁନ୍ଦର ।

ଜଣେ ସୌନ୍ଦର୍ଯ୍ୟତତ୍ତ୍ୱବିତ୍‌କୁ ଯଦି ମୋ ନାକର ସୁନ୍ଦରତା ସଂପର୍କରେ କିଛି ପଚରାଯାଏ ତାହେଲେ ସେ ପଞ୍ଝୁଆର ବକ୍ତବ୍ୟକୁ ଯେ ସଂପୂର୍ଣ୍ଣ ମିଥ୍ୟା ପ୍ରମାଣିତ କରିଦେଇ ପାରେ ଏ କଥା ମୋ ସମେତ କଲୋନୀର ସମସ୍ତେ ଜାଣନ୍ତି । ତଥାପି ମୁଁ ମନେମନେ ଆମୋଦିତ ହେଲି ଓ ଅନ୍ୟମାନେ ଏହାକୁ ଉପଭୋଗ କଲେ ।

ତା ପରଠୁଁ ସେଠି ମୁଁ ଯେତେ ଦିନ ରହିଲି କ୍ଷୀର ଦେବା ସମୟ ବ୍ୟତୀତ ସେ ଅନ୍ୟବେଳେ ଆସି ମୋ ଦୃଷ୍ଟି ଆକର୍ଷଣ କଲାଭଳି ଜାଗା ମାନଙ୍କରେ ଏପଟ ସେପଟ ହେଉଥାଏ । ମୋ ସହ ଦୃଷ୍ଟି ବିନିମୟ ହେଲେ ସେ କେବଳ ତାର ନିରୀହ ହସରୁ ମୁଠାଏ ଓଠରେ ଖେଳେଇ ଦିଏ, ମୁଁ ବି କେତେବେଳେ ତାକୁ ଦେଖି ନଦେଖିଲା ଭଳି ଚାଲିଯାଏ ତ ପୁଣି ବେଳେବେଳେ ତା ପିଠି ଥାପୁଡ଼େଇ ଦେଇ କହେ–

କ'ଣ ପଞ୍ଝୁ ? ଭଲ ? ଆଜି କ'ଣ ଖାଇଛୁ ଇତ୍ୟାଦି ଇତ୍ୟାଦି । ସେତିକିରେ ସେ ଯେପରି କୃତାର୍ଥ ହୋଇଯାଏ ।

ଆଉ ଗୋଟିଏ ଦିନ ଖରାବେଳେ, ମାମୁନୀ ଧାଇଁ ଆସି କହିଲା– ମାଉସୀ ! ପଞ୍ଝୁଆ କ'ଣ ତୋ ପାଇଁ ଆଣିଛି, ଦେଖିବୁ ଆ' ।

ମୁଁ ଗେଟ୍ ପାଖକୁ ଯାଇ ଦେଖେ ତ, ପଞ୍ଝୁଆ ଚୁପ୍‌ଚାପ୍ ଠିଆ ହେଇଚି । ତା' ହାତରେ ଗୋଟିଏ ପଲିଥିନ୍ ପୁଡ଼ିଆ, ମୁଁ ତା ପାଖକୁ ଗଲି । ସେ ପୁଡ଼ିଆଟି ମୋ ହାତକୁ ବଢ଼େଇଦେଲା, ମୁଁ ଆଗ୍ରହର ସହ ଖୋଲି ଦେଖିଲି, ସାତ ଆଠଟି ପାଚିଲା ପିଜୁଳି । ପଚାରିଲି– "କୋଉଠୁ ଆଣିଲୁ ?"

ଆମ ଗଛରୁ । ବୋଉ ସବୁ ତୋଳି ବିକି ଦେଉଛି । ଏବେ ସେ ଶୋଇ ପଡ଼ିଚି ତ ମୁଁ ତମ ପାଇଁ ଲୁଚେଇ କିନା ଆଣିଛି । ମୁଁ ଅନୁଭବ କଲି, ସେଇ ସାତ ଆଠଟି ପିଜୁଳି ଯେମିତି ମୋ ଅନ୍ତଃସ୍ଥଳରେ ତା ପ୍ରତି ଥିବା ଭାବରଜ୍ଜୁକୁ ଆହୁରି ସୁଦୃଢ଼ କରି ଦେଇଛି ! ମୁଁ ସଙ୍ଗେ ସଙ୍ଗେ ଭିତରକୁ ଯାଇ ରସଗୋଲାଟିଏ ଆଣି ତା ହାତକୁ ବଢ଼େଇ ଦେଲି । ସେ ନାହିଁ ନାହିଁ କହୁଥିଲା । ମୁଁ ଜବରଦସ୍ତି ମିଠାଟି ଧରି ତା ପାଟିରେ ଖୁଆଇ ଦେଲି । ମୋ ବାତ୍ସଲ୍ୟ ପ୍ରୀତିର ସ୍ପର୍ଶରେ ତାର ସର୍ବାଙ୍ଗ ଜୁଡୁବୁଡୁ ହୋଇଗଲା, ସେ ପଛକୁ ବୁଲିପଡ଼ି ଏକା ନିଃଶ୍ୱାସକେ ଧାଇଁ ପଳେଇଲା ।

ସେଇ ସେତିକି ତା ସହ ମୋର ଭାବ ବିନିମୟ । ସେ ଆଜିକୁ ଦୁଇ ତିନି ମାସର କଥା । ତା ପରଠୁଁ ପଞ୍ଝୁଆ କୁଆଡ଼େ ଆଉ କାହାକୁ ତା ପାଇଁ ଝିଅ ଠିକ୍ କରିଦେବାପାଇଁ ଅନୁରୋଧ କରିନାହିଁ । କଲୋନୀରେ କେହି କେବେ ଥଟ୍ଟା ପରିହାସରେ କିଛି କହିଲେ ସେ ସବୁକୁ ଏଡ଼େଇ ଦେଇଛି ।

ଏବେ ପୁଣି ସେଇ ଘଟଣାର ପୁନରାବୃତ୍ତି । ସକାଳୁ ସକାଳୁ ମୁଁ ଗାଧୋଇସାରି ଶାଢ଼ୀଟାକୁ ବାହାରେ ଶୁଖେଇ ଦେଇ ଆସିଛି । ପଞ୍ଚୁଆ ଆସିଲା କ୍ଷୀର ଧରି । ଠିଆ ହେଇ ରହିଲା ସେଇ ଶାଢ଼ୀ ପାଖରେ । କୌତୁହଳୀ ହେଉ ମାମୁନୀ ପଚାରିଲା- କିରେ ପଞ୍ଚୁଆ ! ଘରକୁ ଯିବୁନି କି ? ମାମୁନୀ ପ୍ରଶ୍ନର ଉତ୍ତର ନଦେଇ ସେ ଇତସ୍ତତଃ ହୋଇ କହିଲା- ମାଉସୀ ଆସିଛନ୍ତି ? ମାମୁନୀ କହିଲା- ହଁ, ତୋର କ'ଣ କାମ ଥିଲା ତାଙ୍କ ପାଖରେ ? ସେ ଟିକେ ଥତମତ ହୋଇ କହିଲା ।

ମାଉସୀ ବହୁତ ଭଲ ।

ହଁ ତ । ମାମୁନୀ ତା କଥାକୁ ସମର୍ଥନ କଲା । ତାପରେ ସେ ଉତ୍ସାହିତ ହୋଇ ମୁହଁ ତଳକୁ କରି କହିଲା, ତମେ ଟିକେ ମାଉସୀକୁ କହନ୍ତ ନି ?

କ'ଣ ? ଆଶ୍ଚର୍ଯ୍ୟ ହେଇ ମାମୁନୀ ତା ମୁହଁକୁ ଚାହିଲା । ମୁଁ ତାଙ୍କୁ ବାହାହେବି । ପଞ୍ଚୁଆ ତା ସ୍ୱରକୁ ଆଉଟିକେ ନରମ କରି କହିଲା ।

ମାମୁନୀକୁ ଆଉ ସମ୍ଭାଳେ କିଏ ? ସିଏ ହସି ହସି ପୁରା ବେଦମ୍ । ତାପରେ କାଳିସୀ ଲାଗିଲା ପରି ଧାଇଁ ଧାଇଁ ଆସି ମୋ ପାଖରେ ହାଜର ।

ଘଟଣାର କିଛିଦିନ ପରେ ମାମୁନୀ ଥରେ ମତେ ଫୋନ୍‌ରେ ପଞ୍ଚୁଆର ବାହାଘର ସମ୍ବାଦ ଦେଇଥିଲା । ବହୁତ ସୁନ୍ଦର ଝିଅଟା କୁଆଡ଼େ ସେ ବାହା ହେଇଥିଲା, ବାପ ମାଆ ଛେଉଣ୍ଡ ଗରୀବ ଘର ଝିଅଟା । ଦାଦା ଖୁଡ଼ୀଙ୍କ ପାଖରେ ରହି ବଢ଼ିଥିଲା । ମେଟ୍ରିକ୍ ପର୍ଯ୍ୟନ୍ତ ପାଠ ପଢ଼ିଛି ।

କଥାଟା ଶୁଣି ଝିଅଟା ପ୍ରତି ସହାନୁଭୂତିରେ ମୋ ଭିତରଟା କେମିତି ଆକ୍ତାମାକ୍ତା ହେଇଗଲେ ବି ମୁଁ ତାକୁ ପ୍ରକାଶ କରିବାକୁ ନଦେଇ କହିଲି, ପଞ୍ଚୁଆଟା ତାହେଲେ ଲକି ।

ମାମୁନୀ ଥଟ୍ଟା କରି କହିଲା, ଯା ହଉ ତୁ ରକ୍ଷା ପାଇଗଲୁ । ଧୂତ୍ ! ମୁଁ ହସି ହସି ତାକୁ କହିଲି । ସେଦିନ ଦୁହେଁ ଖୁବ୍ ହସିଥିଲୁ ପୂର୍ବ କଥା ସବୁ ମନେ ପକେଇ । ଆଜି ପୁଣି ସେଇ ମାମୁନୀ ହିଁ ଦେଇଚି ଏ ଦୁଃସମ୍ବାଦ । ବାଷ୍ପରୁଦ୍ଧ ହୋଇ ଥରିଲା ଗଳାରେ ସେ କହୁଥିଲା ।

ଜାଣିଲୁ ମାଉସୀ, ପଞ୍ଚୁଆ କାଲି ରାତିରେ ମାଝି ଗଉରୀ ବ୍ରିଜ୍ ଉପରୁ ତଳକୁ ଡେଇଁ ପଡ଼ି ଆତ୍ମହତ୍ୟା କରିଛି ।

ଆକାଶରୁ ଖସି ପଡ଼ିଲାଭଳି ମୁଁ ଅନୁଭବ କଲି ।

ହଠାତ୍ ମୋ ପାଟିରୁ ବାହାରି ପଡ଼ିଲା– କାହିଁକି ? ସେ କହିଲା ତା– ସ୍ତ୍ରୀ ତାଙ୍କ ପଡ଼ିଶା ଘର ପୁଅ ସହ କୁଆଡ଼େ ପଳେଇଚି । ତିନି ଚାରିଦିନ ହେବ ବହୁତ ଖୋଜା ଖୋଜି ପରେ ତାର କିଛି ସନ୍ଧାନ ନମିଳିବାରୁ ଶେଷରେ ନିରାଶ ହେଇ ସେ ଏଇୟା କଲା । ମାମୁନୀ ଫୋନ୍ ରଖିଦେଲା ।

ମନେ ମନେ ଭାବୁଥିଲି, କ'ଣ ଆଉ କରିଥାନ୍ତା ଯେ ଝିଅଟା, ବିବାହର ଅର୍ଥ ବୁଝି ନଥିବା ମାନସିକ ଅନଗ୍ରସର ହୁଣ୍ଡା ପିଲାଟା ସହ କି ଦାମ୍ପତ୍ୟ ଜୀବନ ବିତେଇବାର ସ୍ୱପ୍ନ ସେ ଦେଖି ଥାଆନ୍ତା । ସୁନ୍ଦରୀ ଶିକ୍ଷିତା ଝିଅଟା । ଅନ୍ୟମାନଙ୍କର ଅପରିଣାମଦର୍ଶିତାର ବୋଝକୁ ସେ କାହିଁକି ସିସିଫସ୍ ଭଳି ଜୀବନ ସାରା ବୋହି ବୋହି ବୁଲିଥା'ନ୍ତା ? ତାକୁ ତ ମୁଁ ଦୋଷ ଦେଇପାରୁନଥିଲି, ହେଲେ ଫୁଲ ପରି ସରଳ ଓ ସୁନ୍ଦର ମନଥିବା ଗୋଟିଏ ଅପାପବିଦ୍ଧର ଏ ଦାରୁଣ ପରିଣତି ମୋ ହୃଦୟକୁ ଶତଧା ବିଦୀର୍ଣ୍ଣ କରିଦେଇଥିଲା । ତା ହେଲେ କାହାର ଅଦୂରଦର୍ଶିତା ଏ ପ୍ରଳୟକୁ ଆବାହନ କରି ଆଣିଲା ? କିଏ ଏ ସର୍ବନାଶ ପାଇଁ ଦାୟୀ ?

ବଂଶରକ୍ଷା ପାଇଁ ବ୍ୟାକୁଳ ହେଉଥିବା ତା ବୁଢ଼ୀ ମାଆର ନିରୀହ ଇଚ୍ଛା, କନ୍ୟାଦାୟରୁ ମୁକ୍ତ ହେବାପାଇଁ ସୁଯୋଗ ଖୋଜୁଥିବା ତଥାକଥିତ ସ୍ୱାର୍ଥାନ୍ୱେଷୀ ଅଭିଭାବକମାନେ ନା କେବଳ ମନୋରଞ୍ଜନ ପାଇଁ ନିରୀହ ନିଷ୍କଳଙ୍କମାନଙ୍କ ମନରେ ସ୍ୱପ୍ନର ସର୍ବନାଶୀ ବିଷବୀଜ ବୁଣି ଦେଉଥିବା ଆମମାନଙ୍କ ଭଳି କେତେକ ସୌଖୀନ ମଣିଷ ?

ଦୁଃଖ ଯନ୍ତ୍ରଣା ଓ ଅନ୍ତର୍ଦାହରେ ମୁଁ ସଢ଼ି ଯାଉଥିଲି । ଫୋନ୍‌ଟା କେତେବେଳୁ କଟିଗଲାଣି, ତଥାପି ମୁଁ ରିସିଭରଟା ଧରି କେତେବେଳ ଯାଏ ସେମିତି ଠିଆ ହେଇଛି, ମୋର ହୋସ୍ ନାହିଁ ।



# ବିବର୍ଣ୍ଣ ବସନ୍ତର ଭୋକ

ଜୟପୁର ରେଡିଓ ଷ୍ଟେସନରୁ ରେକର୍ଡିଂ ସାରି ଷ୍ଟପେଜ୍‌କୁ ଆସିଲାବେଳକୁ ଦିନ ପ୍ରାୟ ସାଢ଼େ ତିନିଟା । ଏପ୍ରିଲ୍ ମାସର ମୁଣ୍ଡଫଟା ଖରା । ଚଢ଼େଇ ଚିରୁଗୁଣୀଙ୍କର ବି ସୋର୍ ଶବ୍ଦ ନାହିଁ । ସବୁ ଗାଡ଼ି ଚାଲିଗଲାଣି । ଶେଷ ଗାଡ଼ିଟା ଅଛି । ତାର ସମୟ ଚାରିଟା । ମୁଁ ହାତ ଘଣ୍ଟାକୁ ଚାହିଁଲି । ଆହୁରି ଅଧଘଣ୍ଟା । ଗାଡ଼ିଟା ଯେ ନିଶ୍ଚୟ ଆସିବ, ସେମିତି କିଛି ନିଶ୍ଚିତତା ବି ନାହିଁ । ରେଡିଓ ଷ୍ଟେସନ୍ ଷ୍ଟପେଜ୍‌ଠାରୁ ଦେଢ଼ କି.ମି ଭିତରକୁ । ଷ୍ଟପେଜ୍ ଠୁଁ ବସ୍‌ଷ୍ଟାଣ୍ଡ ଆହୁରି ଦୁଇ କି.ମି. । ସୂର୍ଯ୍ୟଙ୍କର ରଶ୍ମିରେଖା ଯେମିତି ବର୍ଚ୍ଛା ହେଇ ବର୍ଷିଯାଉଥିଲା । ଷ୍ଟାଣ୍ଡକୁ ଯିବାପାଇଁ ମୋର ଧୈର୍ଯ୍ୟ ନଥିଲା । ମୁଁ ସେଇଠି, ସେଇ ବୁଢ଼ା ବରଗଛ ତଳେ ଠିଆ ହେଇ ଅସହାୟ ଦୃଷ୍ଟିରେ ଚାହିଁରହିଥିଲି । କାଳେ କେହି ଚିହ୍ନାଲୋକ ଦୃଷ୍ଟିରେ ପଡ଼ିଯିବେ, ଅନ୍ତତଃ ନବରଙ୍ଗପୁର ପର୍ଯ୍ୟନ୍ତ ଲିଫ୍ଟଟିଏ ମିଳିଯାଇପାରେ । ଶୋଷରେ ମୋ କଣ୍ଠ ନଳୀଟା ଭିତରକୁ ଟାଣି ହେଇଯାଉଥିଲା । ସେତେବେଳେ ଇଲୁକୁ ବର୍ଷେ ବି ପୁରି ନଥାଏ । ଘରେ କାମକରୁଥିବା ଝିଅଟା ପାଖରେ ତାକୁ ଛାଡ଼ି ଆସିଥାଏ । ତା ବ୍ୟସ୍ତତା ଅପେକ୍ଷା ମୋ ବ୍ୟସ୍ତତା ଆହୁରି ବଢ଼ିଯାଉଥିଲା ।

ଦୂରରୁ ଦେଖିଲି, ସେଇ ଖରାର ସମୁଦ୍ରକୁ ପହଁରି ପହଁରି ଚକୋଲେଟ୍ ରଙ୍ଗର ଏକ ମାରୁତି ଭ୍ୟାନ୍ ଅପ୍ରତ୍ୟାଶିତ ଭାବରେ ଏକ ବୈତାଳିକ ଶବ୍ଦ କରି ମୋ ସାମ୍ନାରେ ଅଟକି ଗଲା ।

ଗାଡ଼ି ଚାଳକ ଥିଲେ ଜଣେ ବୃଦ୍ଧ । ବେଶ ପୋଷାକରୁ ବେଶ୍ ସମ୍ଭ୍ରାନ୍ତ ମନେ ହେଉଥିଲେ । ବୟସ ପଞ୍ଚଷଠୀରୁ ସତୁରୀ ଭିତରେ ହେବ । ବେଶ୍ ଆକର୍ଷଣୀୟ ଚେହେରା । ଆଖି ଦୁଇଟା କଥା କହିବା ପରି । ମସ୍ତକର ସଫେଦ ପକ୍ୱକେଶ ତାଙ୍କ ବ୍ୟକ୍ତିତ୍ୱକୁ ଆହୁରି ଚିତ୍ତାକର୍ଷକ କରୁଥିଲା । ସେ ଅଳ୍ପ ଟିକେ ବାହାରକୁ ଝୁଙ୍କିପଡ଼ି କହିଲେ–

କୁଆଡ଼େ ଯିବେ ମାଡାମ୍ ।

ମୋ ଗନ୍ତବ୍ୟ ସ୍ଥଳ କହିଲି ।

ସେ ଈଷତ୍ ହସି ଆନ୍ତରିକତାର ସହ କହିଲେ– "ଅନ୍ତତଃ ପାପଡ଼ାହାଣ୍ଡି ପର୍ଯ୍ୟନ୍ତ ଆପଣଙ୍କ ଲକ୍ଷ୍ୟସ୍ଥଳ ଓ ମୋ ଲକ୍ଷ୍ୟସ୍ଥଳ ଏକ । ଇଫ୍ ୟୁ ହାଭ୍ ନୋ ଅବ୍ଜେକ୍ସନ୍ । ମୁଁ ସେ ପର୍ଯ୍ୟନ୍ତ ଆପଣଙ୍କୁ ଲିଫ୍ଟ ଦେଇପାରେ ।

ଜଣେ ସଂପୂର୍ଣ୍ଣ ଅପରିଚିତ ଭଦ୍ରବ୍ୟକ୍ତିଙ୍କଠାରୁ ଏପ୍ରକାର ଅଯାଚିତ ସାହାଯ୍ୟ ମୁଁ ଆଦୌ ଆଶା କରିନଥିଲି । କହିବାକୁ ଗଲେ ଆଶା ପରିବର୍ତ୍ତେ ମୁଁ ଅଧିକ ଆଶଙ୍କା ହିଁ ଅନୁଭବ କଲି । ମୋ ଭିତରେ କୁଣ୍ଡଳୀ ମୋଡ଼ି ଶୋଇଥିବା ସନ୍ଦେହଟା ଭିଡ଼ିମୋଡ଼ି ହେଲା । ମୁଁ ତାଙ୍କୁ କୃତଜ୍ଞତାର ଭାବ ପ୍ରଦର୍ଶନ କରି କହିଲି–

ନାଇଁ ଆଜ୍ଞା ! ଧନ୍ୟବାଦ୍ । ମୋ ଗାଡ଼ିଟା ଏବେ ଆସିଯିବ । ସିଏ ଆତ୍ମୀୟତାର ହସଟିଏ ହସି କହିଲେ । ମତେ ସନ୍ଦେହ କରୁଛନ୍ତି ? ମୁଁ କଣ ଆପଣଙ୍କୁ ଅସାମାଜିକ ବ୍ୟକ୍ତି ଭଳି ମନେ ହେଉଛି ? ଆପଣ ଏଜୁକେଟେଡ୍, ୱାର୍କିଙ୍ଗ୍ ୱମେନ୍ ଭଳି ମନେ ହେଉଛନ୍ତି, ଅଥଚ ନିଜ ଉପରେ ଭରସା ରଖି ପାରୁ ନାହାଁନ୍ତି ?

ମୁଁ କେମିତି ଗେଣ୍ଡାଭଳି ସଂକୁଚିତ ହୋଇପଡ଼ିଲି ଭଦ୍ରବ୍ୟକ୍ତିଙ୍କ ବକ୍ତବ୍ୟର ସ୍ୱଚ୍ଛତାରେ ଓ ତୀବ୍ରତାରେ । ତଥାପି କିଛି ରିସ୍କ୍ ନେବାପାଇଁ ମୋର ମାନସିକ ପ୍ରସ୍ତୁତି ନଥିଲା । ତାଙ୍କୁ ଏଡ଼େଇ ଦେବାପାଇଁ କହିଲି, ନାଇଁ– ସେମିତି କିଛି ନାହିଁ ଯେ ! ଆଉ ତା ହେଲେ ? ଉଦୁଉଦିଆ ଖରାଟା, ନିଛାଟିଆ ରାସ୍ତାରେ ଏକୁଟିଆଟା ଠିଆ ହେଇଛନ୍ତି । ଅଥଚ କେହି ମାନବିକତାର ହାତଟା ବଢ଼େଇ ଦେଲେ ଆପଣ ତାକୁ ଅବିଶ୍ୱାସ କରୁଛନ୍ତି ? ମଣିଷ ଯଦି ମଣିଷ ଉପରେ ଏତିକି ଟିକେ ଭରସା ନରଖିବ ଆମର ଶିକ୍ଷା ସଂସ୍କାର ସବୁକିଛି ଅର୍ଥହୀନ, ଗୋଟିଏ ବିରାଟ ପ୍ରତାରଣା । ସେ ଧୀରେ ଧୀରେ ଦାର୍ଶନିକ ଭଳି ମନେ ହେଉଥିଲେ । ମୋ ଆଖି ଆଗରେ ନାଚିଗଲା ଘରେ ଛାଡ଼ି ଆସିଥିବା

ମୋ ଏଗାର ମାସର ଛୁଆ । ପ୍ରଥମ କରି ମୁଁ ତାକୁ ଏତେ ସମୟ ଚାକରାଣୀ ପାଖରେ ଛାଡ଼ି ଆସିଛି । ମୋ ଛଡ଼ା ସେ ଅନ୍ୟ କାହା ହାତରେ ଖାଏ ନାହିଁ । ମୁଁ ଅନ୍ୟମନସ୍କ ହୋଇପଡ଼ିଲି ।

କ'ଣ ଭାବୁଛନ୍ତି ମାଡାମ୍ ? ମୁଁ ନିର୍ଭରଯୋଗ୍ୟ କି ନୁହେଁ ? ବେଶ୍ ଆପଣଙ୍କ ଇଚ୍ଛା । ଗାଡ଼ିର ଷ୍ଟିଅରିଂଟା ଧରି ସେ କହିଲେ । ମୁଁ ଦୃଷ୍ଟିତୋଳି ଭଦ୍ରବ୍ୟକ୍ତିଙ୍କ ମୁହଁକୁ ଚାହିଁଲି । ତାଙ୍କ ଦୁଇ କଥା କୁହା ଆଖିରେ ଯେମିତି ଅଶେଷ ଭରସା ଭରି ରହିଛି, ସେମିତି ମୁଁ ଅନୁଭବ କଲି । ତାଙ୍କ ପ୍ରତି ମୋ ମନରେ ସୃଷ୍ଟି ହୋଇଥିବା ସଂକୀର୍ଣ୍ଣ ଚିନ୍ତାଧାରା ପାଇଁ ମନେ ମନେ ଲଜ୍ଜିତ ହେଲି । ଅନ୍ତତଃ ବୟସର ତାରତମ୍ୟ ଦୃଷ୍ଟିରୁ ଭଦ୍ରବ୍ୟକ୍ତି ମୋତେ ନିରାପଦ ମନେହେଲେ । ସେ ବାଁ ହାତରେ ଫ୍ରଣ୍ଟ୍ ଡୋର୍‌ଟା ଖୋଲି ଦେଲେ । ଆଉ କିଛି ଚିନ୍ତା କରିବା ପୂର୍ବରୁ ଯନ୍ତ୍ରଚାଳିତ ପରି ଭିତରକୁ ପଶିଯାଇ ଡୋରଟା ଜୋର୍‌ରେ ଟାଣି ଆଣିଲି । ତଥାପି ମୁଁ ସହଜ ହୋଇପାରୁନଥିଲି । ଅତି ସନ୍ତର୍ପଣରେ ଜାକିଜୁକି ହେଇ ଗୋଟିଏ କୋଣକୁ ବସି ରହିଲି । ଭଦ୍ରବ୍ୟକ୍ତି ଅମାୟିକ ହସର ଢେଉଟିଏ ତାଙ୍କ ମୁଖ ମଣ୍ଡଳରେ ଖେଳେଇ ଦେଇ ମୋର ପରିଚୟ ଚାହିଁଲେ । ମୋର ବୃତ୍ତି, ସ୍ୱାମୀଙ୍କର ବୃତ୍ତି, ସନ୍ତାନ ସନ୍ତତି, ମୁଁ ରହୁଥିବା ପରିବେଶ, କାର୍ଯ୍ୟକ୍ଷେତ୍ରରେ ମୋର ସମସ୍ୟା ଏମିତି ଅନେକ ଆନ୍ତରିକତାର ପ୍ରଶ୍ନ । ମୁଁ ସମ୍ମୋହିତ ହୋଇ ସଂକ୍ଷିପ୍ତରେ କେତେବେଳେ ହଁ କିମ୍ବା ନାହିଁରେ ଉତ୍ତର ଦେଉଥିଲି ।

ଭଦ୍ରବ୍ୟକ୍ତି ପକେଟରୁ ମିଠା ମିକ୍ସଚର୍ ପୁଡ଼ିଆଟିଏ ବାହାର କରି ଖୋଲିଲେ । ସେଥିରୁ କିଛି ନିଜ ପାଟିରେ ପକେଇ ବାକି ଅଧକ ମୋ ଆଡ଼କୁ ବଢ଼େଇ ଦେଲେ । ମୁଁ ହାତଟା ଲମ୍ବେଇ ଦେଇ କହିଲି ଆପଣ ଝିଅମାନଙ୍କ ଭଳି ମିଠା ମିକ୍ସଚର୍ ଖାଉଛନ୍ତି । ସେ କୌଣସି ପ୍ରତିକ୍ରିୟା ପ୍ରଦର୍ଶନ ନକରି କହିଲେ ମୁଁ କଡ଼ା ଖାଏ ନାହିଁ । ମୋ ବିଶ୍ୱାସର ସ୍ତମ୍ଭଟା ଆହୁରି ଦୁଇଇଞ୍ଚ ଗଭୀରକୁ ଚାଲିଗଲା । ଅନ୍ତତଃ କଡ଼ା ଗୁଟ୍‌ଖା ଖା- ପାରୁନଥିବା ଲୋକଟି ପାଖରୁ କୌଣସି ଅସାମାଜିକ ଆଚରଣ ଆଶଙ୍କା କରାଯାଇନପାରେ । ଏମିତି ଗୋଟିଏ ଧାରଣା ମୋର ବଦ୍ଧମୂଳ ହୋଇଗଲା ।

ଗାଡ଼ି କିଛି ଦୂର ଗଡ଼ିବାପରେ ମୁଁ ସହଜ ହେବାକୁ ଆରମ୍ଭ କରୁଥିଲି । କିନ୍ତୁ ସିଏ ଧୀରେ ଧୀରେ ଜଟିଳ ହୋଇ ପଡୁଥିଲେ । ତାଙ୍କର ଆଲୋଚନା ଏକାନ୍ତ ବ୍ୟକ୍ତିଗତ ସ୍ତରକୁ ସଂକ୍ରମିତ ହେଉଥିଲା । ମୋର ବୈବାହିକ ଜୀବନ, ଛଅ ବର୍ଷ ଅତିକ୍ରାନ୍ତ ହୋଇଯାଇଥିଲେ ସୁଦ୍ଧା ମୁଁ କୁଆଡ଼େ ତାଙ୍କୁ ସଦ୍ୟ ବିବାହିତ ଭଳି ଲାଗୁଥିଲି । କାହିଁକି କେଜାଣି ତାଙ୍କର ଏ ପ୍ରକାର ମନ୍ତବ୍ୟଟି ମୋତେ ଆଦୌ ସୁଖକର ବୋଧ ହେଲା ନାହିଁ ।

ତାପରେ ସେ ମୋ ଦାମ୍ପତ୍ୟ ଜୀବନର କେତେକ ଏକାନ୍ତ ଗୋପନ ତଥ୍ୟ ଉପରେ ପ୍ରଶ୍ନ କଲେ, ଯାହା ଅନ୍ୟମାନଙ୍କ ସମ୍ମୁଖରେ ସଂପୂର୍ଣ୍ଣ ଆଲୋଚନା ଅଯୋଗ୍ୟ । ମୁଁ ଅଶ୍ୱସ୍ତି ଅନୁଭବ କଲି । ଭଦ୍ରବ୍ୟକ୍ତିଙ୍କ ମୁହଁକୁ ମୁଁ ଚାହିଁ ପାରିଲି ନାହିଁ । ତଳକୁ ମୁହଁପୋତି ବସି ରହିଲି ।

ସେ ଟିକେ ରସିକତା କରି କହିଲେ- ଦୀର୍ଘ କ୍ଲାନ୍ତିକର ଯାତ୍ରାକୁ ଏମିତି କିଛି ମଧୁର ଆଲୋଚନାରେ ଯଦି ରସସିକ୍ତ କରାଯାଇପାରେ, ସେଇଟା ସେମିତି କିଛି ଧର୍ତ୍ତବ୍ୟ ଅପରାଧ ବୋଲି ଅନ୍ତତଃ ମୁଁ ଭାବେ ନାହିଁ ।

ମୁଁ ଭାବୁଥିଲି । ଧର୍ତ୍ତବ୍ୟ ଅପରାଧଟା ତେବେ କ'ଣ ? କେବଳ ଶାରୀରିକ ଧର୍ଷଣଟା ଅପରାଧ ପଦବାଚ୍ୟ ? ମାନସିକ ଧର୍ଷଣ ପୁଣ୍ୟ କାର୍ଯ୍ୟ ବୋଲି କୋଉ ଶାସ୍ତ୍ରରେ ମାନ୍ୟତା ପାଇଛି । କ୍ଲାନ୍ତିକର ଯାତ୍ରାକୁ ରସସିକ୍ତ କରିବାପାଇଁ ପିତା ବୟସର ଭଦ୍ରବ୍ୟକ୍ତିଟିର କନ୍ୟା ବୟସର ମହିଳା ସହ ଏଇ ନିଷିଦ୍ଧ ଆଲୋଚନା ବ୍ୟତୀତ ବିଷୟବସ୍ତୁର ଅଭାବ ? ମୁଁ ମନେମନେ ବିଦ୍ରୋହୀ ହୋଇପଡୁଥିଲି । ଲୋକଟାର ଅଭଦ୍ର ବ୍ୟବହାର ମତେ ଅସହିଷ୍ଣୁ କରି ଦେଉଥିଲା । ତଥାପି ମନର ଭାବ ଗୋପନ କରି କହିଲି, ଏମିତି କିଛି ତଥ୍ୟ ଅଛି ଯାହାର ସୌନ୍ଦର୍ଯ୍ୟ ଆବରଣ ଭିତରେ ହିଁ ଅତ୍ୟନ୍ତ ଆକର୍ଷଣୀୟ । ଅନାବରଣ ସୌନ୍ଦର୍ଯ୍ୟ ମନରେ ବିକାର ଭାବ ସୃଷ୍ଟି କରେ । ସେମିତି ଏ ସ୍ୱାମୀସ୍ତ୍ରୀ ସଂପର୍କ । ତାହା ଯେତେ ଗୋପନୀୟ ଓ ଘଟାଟୋପ ହୋଇ ରହେ ତାହା ସେତେ ମାଦକତାପୂର୍ଣ୍ଣ ।

ତାଙ୍କର କିଛି ଭାବାନ୍ତର ହେଲା ବୋଧହୁଏ । ଏକ ଯୁବ ସୁଲଭ ଉନ୍ମାଦନାରେ ହୋ ହୋ ହୋଇ ହସି ଉଠି କହିଲେ, କୋଉ ନୂଆ ତଥ୍ୟଟିଏ ଆପଣ ଦୁନିଆକୁ ଦେଉଚନ୍ତି ଯେ ଏତେ ଗୋପନୀୟତାର ଆବଶ୍ୟକତା ହେଉଛି ?

ମୁଁ କହିଲି, ଜୀବନର ଶ୍ଳୀଳ ଅଶ୍ଳୀଳତାରେ ମୁଁ ବିଶ୍ୱାସ କରେ । ପ୍ରାଗୈତିହାସିକ ଯୁଗରୁ ଏ ପର୍ଯ୍ୟନ୍ତ ଯଦି ଏମିତି କିଛି ଥାଏ, ଯାହା ସୃଷ୍ଟିର ସବୁଠାରୁ ଆଦିମ ହେଲେ ସୁଦ୍ଧା ନିତ୍ୟ ନୂତନ ତାହା ହେଉଛି ମଣିଷର ଏଇ ଜାନ୍ତବ କାମନା । ଏ କାମନାର ପରିପ୍ରକାଶ ଯେତେ ଶାଳୀନ, ସମ୍ଭ୍ରାନ୍ତ ଓ ରୁଚିଶୀଳ ହୁଏ ତାହା ସେତେ ସୁନ୍ଦର ଓ ଲୋଭନୀୟ । ନଚେତ୍ ଇତରପ୍ରାଣୀ ଓ ମାନବ ଭିତରେ କିଛି ପାର୍ଥକ୍ୟ ରହିବ ନାହିଁ । ସୃଷ୍ଟି ବିକୃତ ଓ ବିଭତ୍ସ ଏବଂ ମାନବସମାଜ ବିପଥଗାମୀ ହୋଇ ପଡ଼ିବ । ତାପରେ କିଛି ସମୟ ନୀରବତା । ମୁଁ ମନେମନେ ଭାବୁଥିଲି ଏ ପ୍ରକାର ଆଲୋଚନାଠାରୁ ବରଂ ନିରବତା ଶ୍ରେୟସ୍କର । ମୁଁ ଯେକୌଣସି ପ୍ରକାର ଅପ୍ରୀତିକର ପରିସ୍ଥିତିକୁ ଏଡ଼ାଇଦେବାକୁ ଚାହୁଁଥିଲି । ଭଦ୍ରବ୍ୟକ୍ତି ଯେଉଁଭଳି

ଜିହ୍ବାରୋଚକ, ଶ୍ରୁତିସୁଖକର ଆଲୋଚନା ଓ ଆବେଗିକ ସାନ୍ନିଧ ଟିକେ ଚାହୁଁଥିଲେ, ମୋ ଭଳି ଜଣେ ସଂପୂର୍ଣ୍ଣ ଆଣ୍ଟି ରୋମାଣ୍ଟିକ୍ ଓ ବେରସିକା ପାଖରେ ଯେ ଆଦୌ ସମ୍ଭବ ନୁହେଁ, ସେ କଥା ବୋଧହୁଏ ସେ ଅନୁଭବ କରି ସାରିଥିଲେ । ଗାଡ଼ି ସେତେବେଳକୁ ବୋରିଗୁମ୍ମା ଜଙ୍କସନ୍ ପାଖରେ ପହଞ୍ଚି ସାରିଥିଲା । ସେ ନିରବତା ଭଙ୍ଗକରି କହିଲେ, ଏଠି ମୋର ଜଣେ ବନ୍ଧୁଙ୍କ ସହ ସାକ୍ଷାତ କରିବାର ଥିଲା । ଆପଣ ଯଦି କିଛି ନଭାବନ୍ତି..... ।

ମୁଁ ବୋଧହୁଏ ଏମିତି ଗୋଟିଏ ସୁଯୋଗ ଖୋଜୁଥିଲି । ତାଙ୍କୁ ଆଉ ଅଧିକ କହିବାକୁ ନଦେଇ ଉଲ୍ଲସିତ ହୋଇ କହିଲି, ବେଶ୍ ବେଶ୍- ଆପଣଙ୍କର ଏ ଅଯାଚିତ ସାହାଯ୍ୟ ପାଇଁ ଅଶେଷ ଧନ୍ୟବାଦ । ମତେ ଏଇଠୁ ଗାଡ଼ି ମିଳିବାରେ ଅସୁବିଧା ହେବନାହିଁ ।

ଭଦ୍ରତା ଖାତିରରେ ତାଙ୍କ ଆଡ଼କୁ ଦୁଇହାତ ଟେକି ନମସ୍କାର ହେଲି । ସେତକ ଗ୍ରହଣ କରିବାକୁ ସୁଦ୍ଧା ତାଙ୍କର ମାନସିକ ପ୍ରସ୍ତୁତି ବୋଧହୁଏ ନଥିଲା । ସେ ଅନ୍ୟମନସ୍କ ଜଣାପଡୁଥିଲେ ।

ମୁଁ ଗାଡ଼ିଭିତରୁ ବାହାରି ଆସି ରାସ୍ତା ଉପରେ ପାଦଦେଲି । ମନେହେଲା ପରୀକଥାର ସେଇ ଭୟଙ୍କର ରାକ୍ଷସ ଯିଏ କଳାଫୁଲ ଶୁଙ୍ଘେଇ ରାଜକୁମାରୀମାନଙ୍କୁ ତା ଗୁମ୍ଫାରେ ପଥର କରି ରଖୁଥିଲା, ସେହି ଗୁମ୍ଫାରୁ ଅଯୁତ ଯୁଗ ପରେ ମୁଁ ଯେମିତି ମୁକୁଳି ଆସିଲି ।

ମୁଁ ସ୍ୱସ୍ତିର ନିଃଶ୍ୱାସଟିଏ ନେଲି । ମନେହେଲା, ଅନେକ ସମୟଧରି ମୁଁ ଯେମିତି ନିଶ୍ୱାସ ନେବାକୁ ଭୁଲି ଯାଇଥିଲି ।

ମୋ ପ୍ରତ୍ୟାଶିତ ସମୟର ଯଥେଷ୍ଟ ପୂର୍ବରୁ ମୁଁ ବସ୍ ପାଇଗଲି । ବସ୍‌ରେ ପ୍ରବଳ ଭିଡ଼ । ଯାତ୍ରୀଙ୍କର କୋଳାହଳ । ମୋତେ କିନ୍ତୁ ସେ ସବୁ ଆଦୌ ପ୍ରଭାବିତ କରୁନଥିଲା । ମୁଁ କେବଳ ଭାବୁଥିଲି ସେଇ ଭଦ୍ରବ୍ୟକ୍ତିଙ୍କ କଥା- ଯିଏ ହୁଏତ ବୁଢ଼ୀଆଣି ଭଳି ପୁଣି ଏକ ଶିକାର ଆଶାରେ ଜାଲ ବିଛେଇ ଦେଇଥିବେ ।



# ଡମୁଣୀ

ଗୁରୁବାରୁ ଘରେ ପହଞ୍ଚିଲାବେଳକୁ ଦ୍ୱିପ୍ରହର ଗଡ଼ିଗଲାଣି । ଟାଇଁଟାଇଁ ଖରା, ମୁହଁକାନ ପୋଡ଼ିଯାଉଚି । ସେ ଚାରିକାତ ମେଲେଇ ଲଥ୍‌କିନା ବସି ପଡ଼ିଲା ତା ନୁଆଁଣିଆ ଚାଳ ତଳର ମାଟି ପିଣ୍ଡା ଉପରେ ଛୁଆ ଦି'ଟା ସେମିତି ତଳେ ଗଡ଼ି ପଡ଼ିଛନ୍ତି । ଡମୁଣୀ ହାତରେ ଲାଠିଖଣ୍ଡେ ଧରି ସରଗୀ ଫୁଲ ପୋଡୁଛି । ଚାରି ଆଡ଼େ ବିଚିକିଟିଆ ଧୂଆଁ । ଚଡ୍ ଚଡ୍ ହୋଇ ସରଗୀ ଫୁଲର ଶୁଖିଲା ପାଖୁଡ଼ା ସବୁ ଜଳି ଯାଉଛି, ପାଖୁଡ଼ା ତକ ଜଳିଗଲା ପରେ ସେ ଧରିଥିବା ଲାଠିଟିରେ ପିଟିପିଟି ନିଆଁ ଲିଭେଇ ଦେଉଛି ଓ ମଞ୍ଜିତକ ଅଲଗା ଚୁଣ୍ଡ କରୁଛି, ତାର ତମ୍ବାରଙ୍ଗର ମୁହଁ ଓ ଦେହ ସିଝି କଳାକାଠ ପଡ଼ିଗଲାଣି । ତା ଗାଲରେ, କପାଳରେ, ଦୁଇବାହୁରେ ମେଞ୍ଚା ମେଞ୍ଚା କଳା, ନୁଖୁରା ମୁଣ୍ଡରେ ସରଗୀ ଫୁଲର ଦରପୋଡ଼ା ଗୁଣ୍ଡ ସବୁ ପଡ଼ି ସେ ଦିଶୁଥିଲା ଭୂତୁଣୀ ଭଳି । ତାକୁ ଦେଖି ଗୁରୁବାରୁର ମନଟା ଟିକେ ଦବିଗଲା । ସେ ଯେତେବେଳେ ନବରଙ୍ଗପୁର ମଣ୍ଡେଇରୁ ଡମୁଣୀକୁ ଉଦୁଲିଆ ଆଣିଥିଲା, ସେତେବେଳେ

ତା ଗୋରା ତକ୍ ତକ୍ ଅଳସୀ ଫୁଲିଆ ଦେହରେ ମାଉଁସ ଖୁନ୍ଦି ହୋଇଥିଲା । ଟିପାଟିଏ ମାରିଦେଲେ ରକ୍ତ ଥୋପି ପଡ଼ିବ । ଆଖି ଦୁଇଟା ଥିଲା ବଣ ହରିଣୀ ଭଳି ଟଙ୍ଗ୍ ଟଙ୍ଗ୍ । କଥା କଥାକେ ହସି ହସି ଗଡ଼ି ଯାଉଥିଲା ପେଣ୍ଡା ପେଣ୍ଡା କୁରେଇ ଫୁଲ ପରି । ତାର ସେ ରୂପ ଆଉ କାଣିଚାକର ନାହିଁ କି ତା ଓଠରେ ଆଉ ସେ ହସର ପସରା ନାହିଁ ।

ଗୁରୁବାରୁ ତା ଛିଣ୍ଡା ଗାମୁଛା କାନି ଖୋଲି ଶାଳପତ୍ର ଠୋଲାରେ ବଣରୁ ଆଣିଥିବା ଚାପଡ଼ା (କାଇଅଣ୍ଡା) ତକ ଢାଳି ଦେଉ ଦେଉ କହିଲା ବଣ ଜଙ୍ଗଲତ ସଫା ହେଇଗଲା, ଆଉ ଚାପଡ଼ା କୋଉଠୁ ଆସିବ । ଦିନଟା ସାରାର ମିହନତ ଏତିକି ।

ଡମୁଣୀ ହାତରେ ଧରିଥିବା ଲାଠିଟା ପିଣ୍ଡା ତଳକୁ ଡେରି ଦେଇ ଗୁରୁବାରୁ ପାଖରେ ଆସି ବସି ପଡ଼ିଲା । ଚାପଡ଼ା ତକ ଏପଟସେପଟ କରୁ କରୁ ସେ ମନେ ମନେ ହିସାବ କରି କହିଲା । ଚାରିଦନା ହେବ । ଦନାକୁ ପାଞ୍ଚଟଙ୍କା ହେଲେ କୋଡ଼ିଏ ଟଙ୍କା । ଦଶଟଙ୍କାର ଚାଉଲ୍, ପାଞ୍ଚଟଙ୍କାର ତେଲ୍ ଲୁଣ । ଆଉ ପାଞ୍ଚଟଙ୍କା ତୋର୍ ମଦପାଣି ।

ସତକୁ ସତ ଚାରିଦନା ଚାପଡ଼ା ସଅଳ ସଅଳ ବିକ୍ରି ହେଇଗଲା । ଡମୁଣୀକୁ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ଚାଉଳ ଆଉ ତେଲ ଲୁଣ ପିଆଜ ଟିକେ କିଣିଲା । ଆଉ ପାଞ୍ଚଟଙ୍କା ଅଣ୍ଟାରେ ଖୋସି ଘରକୁ ଆସିଲା । ଚାଉଳରେ ମାଣ୍ଡିଆ ଚୁନା ଦେଇ ପେଜ୍ ରାନ୍ଧିଲା । ବଳକା ରଖିଥିବା ଚାପଡ଼ାରେ ପିଆଜ ଲଙ୍କା ଲୁଣ ଦେଇ ଭାଜିଲା ।

ଗୁରୁବାରୁ ମାଣ୍ଡିଆ ପେଜ୍‌ରୁ ଢୋକେ ପିଇ ବାଁ ହାତରେ ଚାପଡ଼ା ଭଜାଟିକେ ପାଟିରେ ଦେଇ କହିଲା, କେତେ ସୁଆଦିଆ କରି ରାନ୍ଧିଛୁଲୋ ! ତୋର ହାତଖଣ୍ଡେ ତ । ଗୁରୁବାରୁର ଅସଲ ଉଦ୍ଦେଶ୍ୟ ଜଣାଥିଲା ଡମୁଣୀକୁ । ସେ କିଛି କହିଲା ନାହିଁ । ଚାରିଦିନ ହେଲା ସେ ଏମିତି ଗୁମ୍‌ସୁମ୍ । ଗୁରୁବାରୁ ବି ଠିକ୍ ଜାଣିଲା, ଡମୁଣୀକୁ ପଟେଇବା ଏଡ଼େ ସହଜ ନୁହେଁ । ସେ ସାହୁକାରଙ୍କୁ କଥା ଦେଇ ଆସିଛି । କାଲି କୁକୁଡ଼ା ଡାକେ ଗାଡ଼ି ବାହାରିବ । ତା ଭଳି ଆହୁରି ୨୦ଜଣ ଯୁଆନ୍ ଟୋକା ଯିବେ ଆନ୍ଧ୍ର । ଦାଦନ ଖଟି ।

ଛେପ ଢୋକି ସିଧାସଳଖ ସେ କହିଲା– କେତେଦିନ ଏମିତି ଚାପଡ଼ା ବିକି ବିକି ବଞ୍ଚାଇବାରେ ନନି । ବଣଜଙ୍ଗଲ ତ ସରିଆସିଲାଣି । କୁଲି ଭୁତି ସପନ ହେଲା । କାନ୍‌ଟରାଇଟିମାନେ ଟିରାକ୍ଟରରେ କାମ କଲେ । ଆମକୁ ଲୋଡୁଛି କିଏ ?

ଚିହିଁକି ଉଠିଲା ଡମୁଣୀ । ମୋର କିଛି ଶୁଣିବାର ନାହିଁ । ତାପରେ ଟିକିଏ ରହି ସ୍ୱରଟାକୁ ନରମ କରି କହିଲା– ଏଇ ଜଙ୍ଗଲ ଆମର ମାଆ ବାପ୍ । ଏଇ ଗାଁ ମାଟି ଆମର ସରଗଭୂଇଁ । ତାକୁ ନିନ୍ଦିଲେ ଧରମ ସହିବ ନାଇଁ । ତୁଇ ନାଇଁ

ପାରିଲେ ମୁଇଁ ତୋତେ ପୋଷିବି । ତୋର ପିଲା ଟୋକିକୁ ପୋଷିବି । ସରଗୀଫୁଲ ନହେଲେ ମହୁଲ ନହେଲେ କେନ୍ଦୁପତର । ଝୁଣା ଆମ୍ବ ତେନ୍ତୁଳି, ରକମ ରକମ କନ୍ଦା, କେତେ କ'ଣ ଆମର ଏ ଖମଣ୍ ମାଆ ଆମ ପାଇଁ ରଖିଛି । ଆମେ ପେଟ୍ ପୋଷି ପାରିବା ନାଇଁ ?

ତୁଇ କୁଆଡ଼େ ନାଇଁ ଯାଆ, ତୁଇ କୁଆଡ଼େ ନାଇଁ ଯାଆ, ସୁଁ ସୁଁ ହେଇ କାନ୍ଦିଲା ଡମୁଣୀ ।

ଗୁରୁବାରୁର ମନ ମାନୁନଥିଲା । ସେ କହିଲା ତୁଇ ମାଇଜୀ ଲୋକ୍ । କାଇଟା ଜାଣିବୁ । ମୁଇଁ ଥରେ ଯାଇକି ଆସେ । ତତେ ଉଦୁଉଦିଆ ଖରାରେ ରଙ୍ଗ ପଡ଼ି ସରଗୀ ଫୁଲ ଜଳେଇବାକୁ ପଡ଼ିବ ନାଇଁ । ଫାଟିଲା ତୁଟିଲା ପନ୍ଧିବୁ ନାଇଁ । ରଙ୍ଗ ରଙ୍ଗ ଖଦୀ ଆଣିଦେବି ତୋ ପାଇଁ । ପିଲା ଟୋକୀ ପାଠ୍‌ଶାଠ୍ ପଢ଼ିବେ । ବଡ଼ବାବୁ ହେବେ । ଆମର୍ ପରା ହୀନସ୍ଥା ହେବେ ନାହିଁ । ଯଦି ସୁବିଧା ହେବ ତ ଆଇଲା ବରଷ୍‌କେ ତତେ ଆଉ ପିଲା ଟୋକୀକୁ ନେଇଯିବି । ଆମେ ଇଟା ଗଢ଼ିବା । ପିଲାପାଠ ପଢ଼ିବେ ।

ଡମୁଣୀ ଚିଡ଼୍‌ଚିଡ଼୍ ହେଲା । ଆମେ ନାଇଁ ଯାଉ । ତୋର ଯଦି ଇଚ୍ଛା ତୁଇ ଏକ୍‌ଲା ଯାଆ ।

ଗୁରୁବାରୁ ଅନୁଭବ କଲା । ଡମୁଣୀ ଟିକେ ନରମିଲାଣି । ମନେମନେ କେତେ ସପନ ଦେଖି ପକାଇଲା । ସିଏ ଆନ୍ଧ୍ରାରୁ ଫେରୁଚି । ହାତରେ ଡମୁଣୀ ପାଇଁ ନୂଆ ଖଦୀ ସାବୁନ୍, ବାସ୍ନା ତେଲ, ଛୁଆଙ୍କ ପାଇଁ ରଙ୍ଗ ବେରଙ୍ଗର ସାର୍ଟ ପେଣ୍ଟ । ଖଜାପିଠା, ପେଁକାଳିଟିଏ ପାଟିରେ ଧରି ସେ ପେଁ ପେଁ କରୁଚି । ତିନି ଚାରିଟା ବେଲୁନ୍ ଦୁଇ ହାତରେ ଉପରକୁ ଟେକି ଧରିଛି । ଛୁଆ ଗୁଡ଼ାକ ବିଲେଇ ପିଲା ଭଳି ଡେଇଁ ଡେଇଁ ତା ଚାରିପଟେ ଘୂରି ବୁଲୁଛନ୍ତି । ଡମୁଣୀ ହସି ହସି ଗଡ଼ିଯାଉଚି । ବାବୁଘର ପିଲାଟୋକୀଙ୍କ ପରି ପିଲାଗୁଡ଼ାକ ଭାରି ଚିକଣ୍ ଚାକଣ୍ ଦିଶୁଛନ୍ତି । ଡମ୍‌ଣୀ ବି ଦିଶୁଛି ସାଉକାରୁନୀ ପରି ।

ସେଦିନ ରାତିରେ ବେଶ୍ ସୁସ୍ଥିର ନିଦଟିଏ ସେ ଶୋଇଲା ।

ତା' ପରଦିନ ସାଉକାରଠୁଁ ଦୁଇଶହଟଙ୍କା ଆଣି ଡମ୍‌ଣୀ ହାତରେ ଗୁଞ୍ଜିଦେଇ କହିଲା । ଜାଗ୍ରତରେ ଏତକ ରଖିଥା । ପିଲା ଟୋକୀଙ୍କ ଦେହ ମୁଣ୍ଡରେ ଖର୍ଚ୍ଚ କରିବୁ । ମୁଁ ଦଶରା ମାସରେ ଫେରି ଆସିବି । ମୁଁ ଆସିଲେ ଦେଖିବୁ ତତେ ନାଟର ରାଣୀ ପରା କରି ସଜେଇ ଦେବି । ମନ୍ ଉଣା କରନାଇଁ ।

ମୁହଁ ଶୁଖେଇ ଡମୁଣୀ କହିଲା । ଦେବୀ ଦେବତାଙ୍କ ଦୟାରୁ ତୁଇ ଆଗ ଭଲରେ ଭଲରେ ଯାଇ ଫେରିଆ, ତା କଣ୍ଠ ରୋଧି ହୋଇ ଆସିଲା । ସେ ଆଉ କିଛି କହିପାରିଲାନି ।

ତାପରଦିନ । ରାତି ଆହୁରି ଦୁଇଘଡ଼ି ବାକି ଥିଲା । ସାଉକାର ଘର ଗାଡ଼ି ସିଧାରାସ୍ତାରେ ନଯାଇ ଗୋଟିଏ ପାଦଚଲା ରାସ୍ତାରେ ସହର ଅଭିମୁଖେ ଗୁରୁବାରୁ ଭଳି ଆହୁରି କୋଡ଼ିଏ ଜଣକୁ ଧରି ଆଗେଇଲା ।

ଡମ୍ବୁଣୀ ଅଣ୍ଟା ଭିଡ଼ିଲା । ଗୁରୁବାରୁ ଫେରିଆସିବା ପର୍ଯ୍ୟନ୍ତ ପିଲାଟୋକୀଙ୍କ ଦାୟିତ୍ୱ ତାର । ଦେଶୀୟା ଟୋକୀ ନିଜକୁ ଖୁବ୍ ସମ୍ଭାଳେ । ସବୁ ଝଡ଼ଝଞ୍ଜାକୁ ପିଠିରେ ପକେଇ ତାର ସଂସାର ଶଗଡ଼ ସେ ଆଗକୁ ଗଡ଼େଇ ନିଏ । ଚିନ୍ତା ଦକ ନଥାଏ । କିନ୍ତୁ ଡମ୍ବୁଣୀ କପାଳକୁ ଦଇବ ଦାଉ ସାଧିଲା । ଗୁରୁବାରୁ ଘରୁ ଗୋଡ଼ କାଢୁ କାଢୁ କି ଅଚିହ୍ନା ରୋଗ ମାଡ଼ିବସିଲା ତା ପୁଅକୁ, ଯେ ଯେତେ ଦିଶାରୀ ଗୁଣିଆ ଡାକ୍ତର ବଇଦ କଲା, କାହିଁରେ କିଛି ହେଲା ନାହିଁ । ଗୁରୁବାରୁ ଦେଇଯାଇଥିବା ଦୁଇଶହ ଟଙ୍କା ସରି ଆଉ ଯେଉଁଠି ଯାହାଥିଲା ବି ଗଲା । ତା ନାକରେ ଥିଲା ଲବଙ୍ଗ ଖାଡ଼ୀ ଦୁଇଟା । ସେ ନୂଆ ହେଇ ଆସିଲାବେଳେ ଗୁରୁବାରୁ ଗଢ଼େଇ ଦେଇଥିଲା ତାପାଇଁ । ସେ ଦୁଇଟା ବି ସାହୁକାର ଘରେ ବନ୍ଧା ପଡ଼ିଲା । ଘରେ ଖୁଦଟିକେ ବି ନାହିଁ । ରୋଗୀଣା ପିଲାକୁ ଛାଡ଼ି ଡମ୍ବୁଣୀ ପନ୍ଦରଦିନ ହେବ ବଣକୁ ଯାଇନି । କାଠ ଖଣ୍ଡେ ବି ନାହିଁ ଚୁଲିରେ ଦେବାକୁ । ତାକୁ ଦଶଦିଗ ଅନ୍ଧାର ଦିଶିଲା ସେ ଧାଇଁଲା ଗୁରୁବାରୁକୁ ଆନ୍ଧ୍ର ପଠେଇଥିବା ଦଲାଲ୍ ବାବୁରାଓ ପାଖକୁ । ରୋଗୀଣା ଛୁଆଟା ତା ଛାତିରେ ଲାଗି ଜୁଳୁଜୁଳୁ ଚାହୁଁଥିଲା । ତାକୁ ଦେଖି ନଦେଖିଲାପରି ବାବୁ ରାଓ ବସି ପିକା ଟାଣିଲା । ଡମ୍ବୁଣୀ ନାଉଲି ଛାଉଲି ହୋଇ କହିଲା–

ଏ ଛୁଆଟାକୁ ମୁଁ କେମିତି ବଞ୍ଚେଇବି ବାବୁ ? ହାତରେ ପଇସାଟିଏ ନାଇଁ ଘରେ ଖାଇବାକୁ ନାହିଁ ।

ଖିଙ୍କାରୀ ହେଇ ବାବୁରାଓ କହିଲା– ମୁଁ କିସ୍ କରିବି ତୋ ମନୁଷ୍ ଗଲାବେଳେ ତାକୁ ହାତରୁ ପାଞ୍ଚଶହ ଟଙ୍କା ଦେଲି ଯେ ସେଇଟା ମତେ ମିଳିବାକୁ ନାଇଁ । ତତେ ପୁଣି କୋଉଠୁ ଆଣିଦେବି ? ଗୁରୁବାରୁ ଆସୁ । ସିଏ ବୁଝିବ ।

ତାର ହାଲୁକ ଶୁଖିଗଲା । ଅସହାୟ ହୋଇ ସେ କହିଲା ତତେ ଜୁହାର ଲାଗୁଛି ମହାପୁରୁ । ମୋର ଆଉ ସାହା ଭରସା କେହି ନାହାଁନ୍ତି । ମୋ ପୁଅକୁ କେମିତି ହେଲେ ବଞ୍ଚା ।

ବାବୁରାଓ ଡମ୍ବୁଣୀ ମୁହଁକୁ ଚାହିଁଲା । ତ୍ରସ୍ତା ହରିଣୀ ଭଳି ତାର ଭୟାର୍ତ୍ତ ଚେହେରାକୁ ସେ ବେଶ୍ ଉପଭୋଗ କଲା । ମନେମନେ କହିଲା, କିଏ ଲୋ ତୋ ନାଁ ଦେଲା ଡମ୍ବୁଣୀ ? ଗହଣା ଗାଣ୍ଠି ଦି'ଖଣ୍ଡ ସାଙ୍ଗକୁ ଭଲ ଶାଢ଼ୀଟିଏ ପିନ୍ଧେଇ ଦେଲେ ତୁ ତ ରାଜରାଣୀ ପରି ଦିଶିବୁ ଲୋ ।

ଶୁଖିଲା ଓଠ ଉପରେ ଜିଭଟା ବୁଲେଇ ଆଣି ସେ ଡମୁଣୀ ମୁହଁକୁ ଚାହିଁ କହିଲା- ''ହଁ; ଆମ କାମବାଲୀ କାଲିଠୁଁ ଆସୁନି । ତୁ ଯଦି ଚାହିଁବୁ, ତା ଜାଗାରେ କାମ କରିପାରିବୁ । ଗୁରୁବାରୁ ନେଇଥିବା ପାଞ୍ଚଶହ ଟଙ୍କା ଛାଡ଼ି ମୁଁ ତତେ ଆଉ ପାଞ୍ଚଶହଟଙ୍କା ଦେବି । ତୁ ମୋ ଘରେ ପାଇଟି ପତ୍ର କରିବୁ ଗୁରୁବାରୁ ଆସିବା ପର୍ଯ୍ୟନ୍ତ । ଦୁଇବେଳା ଖାଇପିଇ ରହିବୁ । ତୋ ପିଲାମାନଙ୍କୁ ବି ଖାଇବାକୁ ମିଳିବ । ଆଉ ପଇସା ଦାବୀ କରିବୁ ନାହିଁ ।''

ଡମୁଣୀର ଆଉ ବିକଳ୍ପ ରାସ୍ତା ନଥିଲା । ସାଉକାରଠୁଁ ପାଞ୍ଚଶହ ଟଙ୍କା ନେଇ ତା ପରଦିନ ଅଙ୍ଗନବାଡ଼ି ଦିଦି ସହ ସେ ସହରକୁ ଗଲା ଛୁଆର ଜୀବନ ବଞ୍ଚେଇବା ପାଇଁ । ଭଗବାନ ତା ଡାକ ଶୁଣିଲେ । ତା ପୁଅ ବଞ୍ଚିଗଲା । ଡମୁଣୀ ବନ୍ଧା ପଡ଼ିଗଲା ବାବୁରାଓ କୁମୁଟି ଘରେ ।

ପିଲା ଟୋକୀ ଦୁଇଟାଙ୍କୁ କୁମୁଟି ଘର ଅଗଣାରେ ଗଡ଼େଇ ଦେଇ ସକାଳୁ ସଂଜ ପର୍ଯ୍ୟନ୍ତ ଗଧ ଖଟଣୀ ଖଟିଲା ଡମୁଣୀ । ଗାଇଗୋରୁ, ଗୁହାଳ ଗୋବରଠାରୁ ଆରମ୍ଭ କରି ବାସନା ମଜା ଲୁଗାକଚା ପାଣିବୁହା ପର୍ଯ୍ୟନ୍ତ । ପୁଣି ଜମିରୁ ଘାସ ବାଛି ଧାନ କାଟିବା ବିରି ମାଣ୍ଡିଆ ତୋଳିବା, ସବୁ କାମ ତାଙ୍କୁ କରିବାକୁ ହୁଏ । ପାଷାଣୀ ଅହଲ୍ୟା ଭଳି ସେ ଗୁରୁବାରୁର ଫେରନ୍ତା ରାସ୍ତାକୁ ଚାହିଁ କୁମୁଟି ଘରେ ପଡ଼ି ରହିଲା ।

ଗୁଣ୍ଡିଚା ମାସ ଯାଇ ଦଶରା ମାସ ଆସିଲା । ଉଚ୍ଚାଟିତ ହେଲା ଡମୁଣୀ । ଗୁରୁବାରୁ ଦଶରା ମାସରେ ଆସିବାକୁ କଥା ଦେଇଥିଲା । ଦଶରା ଯାଇ ଦିଆଲୀ ଗଲା । ପୁଷ୍ପରବ ଆସିଲା । ଚାହିଁ ଚାହିଁ ଡମୁଣୀର ଆଖିରୁ ପାଣି ମଲା । ଗୁରୁବାରୁର ଦେଖା ନାଇଁ । ମଣ୍ଡେଇ ହେଲା । ଜାତି ଜାତିକା ଦୋକାନ, ବଜାର, ଶହଶହ ଲୋକ । ରାତିସାରା ନାଟ ହେଲା । ଗାଁ ଉଠିଲା ପଡ଼ିଲା, ଡମୁଣୀ ମୁହଁ ମାଡ଼ି ଛିଣ୍ଡା କନ୍ଥା ଉପରେ ପଡ଼ି ରହିଲା ।

ଚଇତି ପରବ ଆସିଲା । ଗାଁ ନାଚ ଗୀତରେ ଫାଟି ପଡ଼ିଲା । ପିଲା ଦୁଇଟା କେତେବେଳୁ ଶୋଇପଡ଼ିଲେଣି । ଛିଣ୍ଡା ଚାଦର ଖଣ୍ଡେ ସେମାନଙ୍କୁ ଘୋଡ଼େଇ ଦେଇ ସେଇ ଛୁଆଙ୍କ ପାଖରେ ନିଜେ ଗଡ଼ିପଡ଼ିଲା । ବେଶି ବେଶି ମନେପଡ଼ିଲା ଗୁରୁବାରୁ । ଆଖି କୋଣରୁ ଗଡ଼ି ପଡ଼ିଲା ଧାର ଧାର ଲୁହ । ଲୋକଟା ରାଜରାଣୀ କରିବାର ସପନ ଦେଖେଇ ଚାଲିଗଲା ଯେ ସେ ଏଠି ଗୋତିଆଣୀ ହୋଇ ପଡ଼ି ରହିଛି । କେଜାଣି ସିଏ ଆଉ ଫେରୁଚି କି ନାଇଁ କେତେଦିନ ସିଏ ଏମିତି କୁମୁଟିର ଅଇଁଷା କଣ୍ଟା ଖାଇ ପଡ଼ି ରହିଥିବ ?

ତା କବାଟରେ ଶିକୁଳିଟା ଝଣ୍ ଝଣ୍ ହେଲା । ଚମକିପଡ଼ିଲା ଡମୁଣୀ ଗାଁ ମୁଣ୍ଡରେ ନାଟ ହେଉଛି । ସୀତାହରଣ । ରାବଣର ମଞ୍ଚ ଥରା ହସ ଶୁଭୁଛି । ଶୁଭୁଛି ମା ସୀତାଙ୍କର ବୁକୁଥରା କାନ୍ଦ ।

ଏତେ ରାତିରେ କିଏ ହେଇପାରେ ? ଗୁରୁବାରୁ ଫେରିଲା କି ଆଉ ? ଏକ ଅଜଣା ଆନନ୍ଦରେ ସେ ଶିହରୀ ଉଠିଲା । କିଛି ଚିନ୍ତା କରିବା ପୂର୍ବରୁ ସେ ସେ ହୁଁ କରି ଉଠି ଶିକୁଳିଟା ଖୋଲି ପକେଇଲା । ବାହାରେ କାଳି ଜହ୍ନିଆ ରାତି । ଘର ଭିତରଟା କିଟିକିଟି ଅନ୍ଧାର । କାଳିଆ ଭୁଷୁଣ୍ଡା ଲୋକଟା ସଁ ସଁ ହେଇ ଡମୁଣୀକୁ ଠେଲି ତା ଝୁପୁଡ଼ି ଘର ଭିତରକୁ ଅରଣାମଇଁଷି ପରି ପଶିଗଲା ଓ କବାଟଟା ଆଉଜାଇ ଆଣି ଭିତରୁ ଶିକୁଳି ଦେଇଦେଲା । ଭୟରେ ଚିତ୍କାର କରୁଥିଲା ଡମୁଣୀ ।

ଲୋକଟାର ଗୋଟାଏ ଶକ୍ତ ବାହୁ ଅଜଗର ଭଳି ତା ଅଣ୍ଟା ଚାରିପଟେ ଗୁଡ଼ାଇ ହେଇଗଲା । ଆଉ ଗୋଟାଏ ଶକ୍ତ ପାପୁଲି ଚାପିଧରିଲା ତା ମୁହଁ । ସଜାଗ ହେବାକୁ ବେଳ ପାଇଲା ନାହିଁ ଡମୁଣୀ । ତାକୁ ଜୋରଜବରଦସ୍ତ ତଳେ ପକେଇ ଦେଇ ସେଇ ମଣିଷଖିଆ ବାଘଟା ତା ହାଡ଼ମାଉଁସ ଖିନ୍‌ଭିନ୍ କରି ଖାଇଗଲା ପୁଳାପୁଳା । ଭୟରେ ତାର ଚେତା ବୁଡ଼ିଗଲା । ସେ ଚେତା ଫେରିପାଇଲା ବେଳକୁ ବାହାରେ ଖରା ପଡ଼ିସାରିଥିଲା । ଛୁଆଦି'ଟା ତା ପାଖରେ ବସି କାନ୍ଦୁଥାନ୍ତି । ସେ ଉଠି ବସିଲା । ଦେହ ମୁଣ୍ଡ ସଜାଡ଼ିଲା । ଦେହର ଯନ୍ତ୍ରଣା ସାଙ୍ଗକୁ ମନର ଯନ୍ତ୍ରଣା ତାକୁ ଅସ୍ଥିର କରି ଦେଉଥିଲା । କୁମୁଟି ଘରୁ ଆଣିଥିବା ବାସି ଭାତ ଓ ଶୁଖୁଆ ପୋଡ଼ା ଟିକେ ଛୁଆଙ୍କ ଆଗରେ ଥୋଇ ଦେଲା । ଗିନା ପାଖରେ ହାମୁଡ଼େଇ ସେତକ ସାରିଦେଇ ସେମାନେ ଗାଁ ଦାଣ୍ଡକୁ ଚାଲିଗଲେ ।

ସିଏ କୁମୁଟିଘରର ପାଇଟିକୁ ଗଲା ନାହିଁ । ଶୋଇ ରହିଲା ଦିନସାରା । ଗାଧୁଆ ନାହିଁ କି ଖିଆପିଆ ନାହିଁ । ଦେହ ସୁଖ ନାହିଁ । ପାଇଟିକୁ ଆସି ପାରିବ ନାହିଁ ବୋଲି କୁମୁଟିଆଣୀ ପାଖକୁ ଖବର ପଠେଇଦେଲା ଓ କୁମୁଟି ଉଦ୍ଦେଶ୍ୟରେ ଥୁ' କରି ଲଣ୍ଡାଏ ଛେପ ଘରକୋଣକୁ ପକେଇଦେଲା ।

କାଲି ବେଳକୁ ଆଜି ବେଳ । ଆଜିବି ସେମିତି ଶିକୁଳୀର ଝଣ୍ ଝଣ୍ ଶବ୍ଦ । ରକ୍ତ ତାତି ଉଠିଲା ତାର । ତା ଦୁଇ ନାକପୁଡ଼ାରୁ ସଁ ସଁ ନିଃଶ୍ୱାସ ବାହାରିଲା । ତମାମ ଶରୀରରେ ବିଜୁଳି ଖେଳିଗଲା । କି ଏକ ଅଜଣା ଶକ୍ତି ତାକୁ ସବାର ହେଲା ପରି ସେ ଅନୁଭବ କଲା । ସେ ଯେମିତି ଗୁରୁବାରୁର ମାଇଜୀ ଡମୁଣୀ ନୁହେଁ, ଆଉ କେହି କୋଉ ଡୁମା କି ଦେବତା ତା' ଶରୀରରେ ପଶିଯାଇଛି । ତାକୁ ଅସ୍ତବ୍ୟସ୍ତ

କରୁଛି । ସେ ଉଠି ଠିଆହେଲା । ଘର ଭିତରଟା କିଟିମିଟି ଅନ୍ଧାର । ସେଇ ଅନ୍ଧାର ଭିତରେ ଅଣ୍ଡାଳି ଅଣ୍ଡାଳି ସିଏ ଗୋଟିଏ ଓଜନିଆ ଜିନିଷ ଉଠେଇ ଧରିଲା । ଶିକୁଳି ଖୋଲିଦେଲା । କାଲିର ସେଇ ଭୁଷୁଣ୍ଡା ଲୋକଟା ଦ୍ୱିଗୁଣ ଉତ୍ସାହରେ ଭିତରକୁ ଠେଲି ହେଇ ଆସୁଥିଲା । ଡମୁଣୀ ଧରିଥିବା ଜିନିଷଟାକୁ ଦୁଇ ହାତରେ ଉପରକୁ ଉଞ୍ଚେଇ ଜୋର କରି ବସେଇଦେଲା ଚୋଟେ । ଚିତ୍କାର କରି ତଳେ ପଡ଼ିଗଲା ଲୋକଟା । ଭୂତଗ୍ରାସିଲା ପରି ସେ ପୁଣି ବସେଇ ଦେଇଗଲା ଚୋଟ ଉପରେ ଚୋଟ । ପିଚ୍ ପିଚ୍ ଉଷୁମ ରକ୍ତ ଛିଟିକାରେ ସେ ଗାଧୋଇ ପଡ଼ିଲା । ସବୁ ଶେଷ । ଗୋଟିଏ ମୁହୂର୍ତ୍ତ ଭିତରେ ଶେଷ ହୋଇଗଲା ତା ଜୀବନର ଯନ୍ତ୍ରଣା । ବନ୍ଧନର ବେଦନା । ନା ଅତୀତ ନା ବର୍ତ୍ତମାନ ନା ଭବିଷ୍ୟତ । କୌଣସି ଚିନ୍ତା ତାକୁ ଆକ୍ରାନ୍ତ କରୁନଥିଲା । ସେ କେବଳ ଅନୁଭବୁ ଥିଲା ଗୋଟିଏ କାଳିଆ କିଟିମିଟି ହୁଣ୍ଡା ମଣିଷ ଖିଆ ବାଘ । ଯାହାକୁ ସେ ହାଣିଟିକ୍ ଟିକ୍ କରିଦେଇଛି । ତା ରକ୍ତମଖା ଦାନ୍ତ ସବୁ ଭାଙ୍ଗି ଚୁର୍‌ମାର୍ କରିଦେଇଛି । ହାତରେ ଧରିଥିବା ଟାଙ୍ଗିଆଟାକୁ ଫିଙ୍ଗିଦେଇ ସେ ଲଥ୍‌କରି ବସିପଡ଼ିଲା କାନ୍ଥକୁ ଆଉଜି ।



# ମହାଯାତ୍ରା

ସୁଦର୍ଶନ ବିଳମ୍ବ ନକରି ଲୋକାଲ୍ ଟ୍ରେନ୍‌ରେ ଚଢ଼ିଗଲା । ବମ୍ବେ ଷ୍ଟେସନ୍ । ଅଫିସ୍ ଫେରନ୍ତା ବେଳ । ଛାତି ଫଟା ଲୋକ । କେବଳ ପାଦ ଦୁଇଟି ରଖିବାପାଇଁ ସେ ସମର୍ଥ ହେଲା । ଯାହା ବି ହେଉ ତାକୁ ବାନ୍ଦ୍ରା ଷ୍ଟେସନ ପର୍ଯ୍ୟନ୍ତ ଯିବାକୁ ହେବ । ସେଇଠୁ ଓହ୍ଲେଇ ରତିକାନ୍ତ ଘରକୁ ଯିବା ପାଇଁ ତାକୁ ଟାକ୍ସିଟିଏ ଧରିବାକୁ ହେବ । ଛାତି ପକେଟରେ ହାତ ପକେଇଲା, ଦରମଇଳା ଲୋଚାକୋଚା ଶହେଟଙ୍କିଆ ନୋଟ୍ ଖଣ୍ଡେ ପଡ଼ିରହିଥିଲା । ପେଟରେ ଅଜସ୍ର ଭୋକ । ନୋଟ୍ ଖଣ୍ଡକର ସଦ୍‌ବ୍ୟବହାର କରାଯାଇପାରନ୍ତା, କିନ୍ତୁ ସେ ସେୟା କଲା ନାହିଁ । ସନ୍ଧ୍ୟ ସାତ ହେଲାଣି, ତାର ମନେପଡ଼ିଲା ଦିନଟା ଭିତରେ ସେ କେବଳ କଦଳୀ ଗୋଟିଏ ହିଁ ଖାଇଛି । ବାନ୍ଦ୍ରା ଷ୍ଟେସନରୁ ରତିକାନ୍ତ ଘରକୁ ଯିବାପାଇଁ ଟ୍ୟାକ୍ସିର ତା' ପକେଟର ଦରମଇଳା ନୋଟ୍ ସହ ସଂପର୍କ ଥିଲା । ତେଣୁ ସେ ଜାଣିଶୁଣି ଚୁପ୍ ରହିଲା ।

ପେଟଟା ଯନ୍ତ୍ରଣାରେ କଁ କଁ କରିବା ଆରମ୍ଭ କରିଦେଲାଣି । ବୋଉ କଥା ମନେପଡ଼ିଲା । ଯେତେ ରାଗିଥିଲେ ବି ତା' ପାଖରେ ଭୋକ ହେଉଛି ବୋଲି କହିଦେଲେ ତା'ର ସବୁତକ ରାଗ ପାଣିପରି କୁଆଡ଼େ

ମିଳେଇ ଯାଉଥିଲା । ତାର ଫାଇଦା ଉଠାଉଥିଲା ସୁଦର୍ଶନ, ମାଆର କ୍ରୋଧ ଶାନ୍ତ କରିବା ପାଇଁ ସେ ଏଇ ଅସ୍ତ୍ରଟି ସର୍ବଦା ବ୍ୟବହାର କରୁଥିଲା । ତା' ମନଟା ଟିକେ ଦବିଗଲା । ଦୁଇ ଆଖିରେ ଜକେଇ ଆସିଲା ଲୁହ । କିଛି ସମୟ ପାଇଁ ଦୁଇ ଆଖି ବନ୍ଦ କରି ସେ ଠିଆ ହେଲା । ସେ ପୁଣି ନିଜକୁ ଦୃଢ଼ କରିନେଲା । ସଂପର୍କ, ଆବେଗ, ଭାବପ୍ରବଣତା, ଏସବୁ ତାକୁ ଆଉ ଦୁର୍ବଳ କରୁନାହିଁ । ବନପୁଷ୍ପାର ପ୍ରତାରଣା ପରଠାରୁ ତ ଆଦୌ ନୁହେଁ । ସେ ପଥର ପାଲଟି ଯାଇଛି । କଠିନ ହେଇଯାଇଚି ତା' ମନ ।

ଅଥଚ ଏଇ ବନପୁଷ୍ପାର ଆକର୍ଷଣ ତା' ପାଇଁ ଦିନେ ଥିଲା ଅଲଂଘନୀୟ । ବ୍ୟକ୍ତିଗତ ଜୀବନର ସକଳ ବ୍ୟର୍ଥତା ସେ ବନପୁଷ୍ପାର କୃଷ୍ଣାକବରୀ ଭିତରେ ହଜେଇ ଦେଉଥିଲା । ତା' ଘନକୃଷ୍ଣ କେଶରାଶି ବି ସେମିତି ଥିଲା ବିସ୍ମୟଜନକ ଭାବରେ ସୁନ୍ଦର । ତା' ଓଠର ସ୍ପର୍ଶ ପାହାନ୍ତି ତାରା ଭଳି ବେଶ୍ ପ୍ରତିଶ୍ରୁତିମୟ ଲାଗୁଥିଲା ତାକୁ । ତା' ଦୁଇ ଆଖିର ନୀଳ ହ୍ରଦ ଭିତରେ ଜୀବନର ସକଳ ଜ୍ୱାଳା ଯନ୍ତ୍ରଣାକୁ ଭୁଲିବାର ଅଙ୍ଗୀକୃତ ଆବେଗ ସେ ସ୍ପଷ୍ଟ ଅନୁଭବ କରୁଥିଲା ।

ସେଦିନ ବିପତ୍ନୀକ, ପ୍ରୌଢ଼, ଅଜସ୍ର ସଂପତ୍ତିର ମାଲିକ ଶିଳ୍ପପତି ଅବନୀ ରାୟ ଓ ବନପୁଷ୍ପାର ସଂପର୍କ ବିଷୟରେ ସୁଦର୍ଶନକୁ ପ୍ରଥମେ ଖବରଦେଇଥିଲା ତାର ଅନ୍ତରଙ୍ଗ ବନ୍ଧୁ ଗୌରବ । ପ୍ରତିବଦଳରେ ସୁଦର୍ଶନଠାରୁ ଗୋଟିଏ ଶକ୍ତ ମୁଥ ଖାଇବା ପରେ ବି ସେ ଅବିଚଳିତ ଭାବରେ କେବଳ ଏତିକି କହିଥିଲା– ତୁ କୁହୁଡ଼ି ପହଁରୁଚୁ ସୁଦର୍ଶନ । ତା'ପରେ ସେ ନୀରବରେ ପ୍ରସ୍ଥାନ କରିଥିଲା ।

ବନ୍ୟପଶୁ ପରି ହିଂସ୍ର ହେଇ ପଡ଼ିଥିଲା ସୁଦର୍ଶନ । ବନପୁଷ୍ପା ପାଖରେ ପହଞ୍ଚି ପାଗଳଙ୍କ ଭଳି ତାର ଦୁଇବାହୁକୁ ଧରି ଖୁବ୍ ଜୋର୍‌ରେ ଝାଙ୍କି ଦେଇଥିଲା ଓ ତା' ପାଖରୁ ସତ୍ୟାସତ୍ୟ ଜାଣିବାକୁ ଚାହିଁଥିଲା ।

ବନପୁଷ୍ପା ଦୁଇ ଆଖିରେ ଛଳନାର ଗଙ୍ଗାଯମୁନା ବୁହାଇ ସୁଦର୍ଶନର ବିଶ୍ୱାସ ଜିତିବାରେ ସଫଳ ହୋଇଥିଲା ।

ଆଶ୍ୱସ୍ତ ହୋଇଥିଲା ସୁଦର୍ଶନ ।

ତା'ପରେ ହଠାତ୍ ଦିନେ ସହରରୁ ବନପୁଷ୍ପାର ଆକସ୍ମିକ ଅନ୍ତର୍ଦ୍ଧାନ ଭ୍ରମରେ ପକେଇଥିଲା ସୁଦର୍ଶନକୁ । ଅବଶ୍ୟ ଦୁଇମାସପରେ ବନପୁଷ୍ପା ଫେରିଲା କିନ୍ତୁ ସେତେବେଳକୁ ସୁଦର୍ଶନର ଆଉ କିଛି କର୍ତ୍ତୃତ୍ୱ ନଥିଲା । ତା' ସୀମନ୍ତର ସିନ୍ଦୂର ତାକୁ କୋଟିପତି ଅବନୀ ରାୟର ପରିଣୀତା ବୋଲି ଘୋଷଣା କରୁଥିଲା ।

ତା' ଜୀବନର ସବୁ ଉପପାଦ୍ୟ ଭୁଲ୍ ହୋଇଗଲା ପରେ ସେ ଆଉ ନିମ୍ନମଧ୍ୟବିତ୍ତ ପରିବାରର ବାଧ୍ୟପୁତ୍ର ହୋଇନଥିଲା । ପିତାମାତାଙ୍କ ଉଚ୍ଚାଭିଳାଷ ଚରିତାର୍ଥ

କରିବାପାଇଁ ସେ ଇଂଜିନିୟରିଂରେ ଗ୍ରାଜୁଏଟ୍‌ଟିଏ ହୋଇସାରିଥିଲା । ସେଥିପାଇଁ ପ୍ରାଇମେରୀ ସ୍କୁଲଶିକ୍ଷକ ବାପାଙ୍କର ସମସ୍ତ ସ୍ଥାବର ଓ ଅସ୍ଥାବର ସମ୍ପତ୍ତି ସର୍ତ୍ତରଖା ହୋଇଥିଲା । କିନ୍ତୁ ପ୍ରତିଫଳ କିଛି ହେଲା ନାହିଁ । ତାକୁ ଚାକିରିଟିଏ ମିଳିପାରିଲା ନାହିଁ । ଆବେଦନ, ସାକ୍ଷାତକାର ସବୁ ବ୍ୟର୍ଥଗଲା । ନିଜ ଉପରୁ ଆସ୍ଥା ତୁଟିଗଲା । ପ୍ରସ୍ତୁତି ପାଇଁ ଆଉ ଆନ୍ତରିକତା ରହିଲା ନାହିଁ । ଜୀବନରୁ ତୁଟି ଆସିଲା ମୋହ । ଏକଦା ଯତ୍ନରେ ସଜ୍ଜିକରଣ ହେଉଥିବା କେଶ ଓ ଶ୍ମଶ୍ରୁ ଅଯତ୍ନବର୍ଦ୍ଧିତ ହୋଇ କାପାଳିକର ଭ୍ରମ ସୃଷ୍ଟି କଲେ । ଚକ୍ଷୁ ଓ ଗଣ୍ଡଦେଶ କୋଟରଗତ ହେଲେ । ହନୁହାଡ଼ମାନେ ବାହାରକୁ ବାହାରି ପଡ଼ିଲେ । ସେ ଆଉ ସୁଦର୍ଶନ ନୁହେଁ ବରଂ କୁଦର୍ଶନ ହେଲା । ତା' ସ୍ୱଭାବ ଚିଡ଼୍‌ଚିଡ଼ା ହେଲା । ଅନ୍ୟମାନଙ୍କ ପ୍ରତି ବ୍ୟବହାର ରୁକ୍ଷ ହେଲା । ଘର ଅପେକ୍ଷା ବାହାରେ କଟିଲା ବେଶି ସମୟ ।

ଘରେ ପାଦ ଦେଲେ ବୋଉ ମୁହଁ ଶୁଖେଇ ଆଖି ଢଳଢଳ କରି କହୁଥିଲା–

କେତେଦିନ ଏମିତି ବାରବୁଲା ହେଇ ବୁଲୁଥିବୁରେ ! କିଛି ଗୋଟାଏ କର ! ଏତେବଡ଼ ପରିବାର କେମିତି ଚଳିବ ? ବାପା କ'ଣ ଆଉ ପାରୁଛନ୍ତି ? ବୋଉ କଥାରେ ବିସ୍ଫୋରଣ କରି ଉଠୁଥିଲା ସୁଦର୍ଶନ । ସେ ଜାଣିଥିଲା ସରକାରୀ ଚାକିରୀ ପାଇଁ ଆଉ ତାର ବୟସ ନାହିଁ । କମ୍ପାନୀ ଚାକିରୀ ପାଇଁ ସେମାନେ ଚାହୁଁଥିଲେ ଅନୁଭୂତି । ଆବଶ୍ୟକବେଳେ ସୁପାରିଶ୍‌, ଘୁଷ୍‌ ବି । କୌଣସିଟି ତା' ପାଖରେ ନଥିଲା । ବେପାର ବଣିଜ ପାଇଁ ତ ନିମ୍ନମଧ୍ୟବିତ୍ତ ପରିବାରର ଆର୍ଥିକ ଅସ୍ୱଚ୍ଛଳତା ସବୁବେଳେ ପ୍ରତିବନ୍ଧକ । ବିରକ୍ତ ହୋଇ କହୁଥିଲା, କ'ଣ ତମେମାନେ ମୋ ପାଇଁ ରଖିଛ ଯେ ମୁଁ କରିବି ? ଘରେ ତିନିତିନିଟା ଉଦଣ୍ଡୀ ଝିଅ ଛଡ଼ା କ'ଣ ତମର ସମ୍ବଳ ?

ବୋଉ ଆଉ କଥା ବଢ଼ଉ ନଥିଲା । ଭଉଣୀମାନଙ୍କର ବି ତା' ପ୍ରତି ଆଉ ସମ୍ମାନ ନଥିଲା । ଲଫଙ୍ଗା ସୂର୍ଯ୍ୟ ପଟ୍ଟନାୟକ ବାଇକ୍ ପଛରେ ଯେଉଁଦିନ ଜୁଲିକୁ ସେ ଦେଖିଲା ସେଦିନ ଘରେ ଖଣ୍ଡ ପ୍ରଳୟ କରିଥିଲା । ଜୁଲିର ଚୁଟି ଧରି ସେ ତାକୁ ଯେତେବେଳେ କୈଫିୟତ ମାଗିଲା ଜୁଲି ନିର୍ଲଜ୍ଜତାର ସବୁ ସୀମା ଲଂଘନ କରି ତାକୁ କହିଥିଲା–

ମୁଁ ସୂର୍ଯ୍ୟ ପଟ୍ଟନାୟକ ବାଇକ୍ ପଛରେ ବସିଲେ ଯଦି ତତେ ଖରାପ ଲାଗୁଛି ତୁ ମୋ ପାଇଁ ଗୋଟିଏ ଯୋଗାଡ଼ କରିଦଉନୁ । ଯାହା ପଛରେ ବସିଲେ ତୋର ମାନ ମର୍ଯ୍ୟାଦା ଉପରକୁ ଉଠିଯିବ । ତିରିଶ ବର୍ଷ ତ ହେଲା, ଆଉ କେତେବର୍ଷ ଅନେଇ ବସିଥିବି ତୁମମାନଙ୍କୁ । ବ୍ରହ୍ମଚାପୁଡ଼ା ଖାଇଲା ଭଳି ଲାଗିଥିଲା ସୁଦର୍ଶନକୁ ।

ପରିବାରକୁ ମାସକୁ ହଜାରେ ଟଙ୍କା ସାହାଯ୍ୟ ରାଶି ଆକାରରେ ଦେଉଥିବା ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନଟିରେ କାମ କରୁଥିବା ସିଲି ପାଇଁ ତ ସାତଖୁଣ୍ ମାଫ୍ । ସେ

କେତେବେଳେ ଘରକୁ ଆସେ, କେତେବେଳେ ଘରୁ ଯାଏ, କୁଆଡ଼େ କାହାସାଙ୍ଗରେ ଯାଏ ସେ କଥା ପଚାରିବାକୁ କାହାରି ଜୁ ନଥାଏ । ତଥାପି ସୁଦର୍ଶନ ନିଷ୍ପୃହ ରହେ । ଯୁକ୍ତ ୩ରେ ପଢୁଥିବା ମିଲି ସବା ସାନ ହେଇ ବି ସମସ୍ତଙ୍କଠାରୁ ବଳକା । ନାଗୁଣୀ ଭଳି ସେ ସବୁବେଳେ ଖାଲି ଫଁ ଫଁ । କେଡ଼େ ଟିକେ ମେଞ୍ଚଡ଼ । ତାକୁ ଶାସନ କରିବାପାଇଁ ସୁଦର୍ଶନକୁ ପାଞ୍ଚମିନିଟ୍ ଲାଗନ୍ତା ନାହିଁ । କିନ୍ତୁ ସେ ନିରାସକ୍ତ ରହେ ।

ଘରକୁ ଆସିବାକୁ ଇଚ୍ଛାହୁଏ ନାହିଁ ତାର । ସମୟ କଟେ ଖଟିରେ । ବିଳମ୍ବିତ ରାତ୍ରିରେ ସେ ଫେରେ ଘରକୁ । ବେଳେବେଳେ ଘରକୁ ଫେରିଲାବେଳକୁ ତା' ପାଦ ଟଳମଳ ହେଉଥାଏ । ଆଖିଗୁଡ଼ାକ ଲାଲ୍ ଟହଟହ । ମୁହଁରୁ ଭଣଭଣ ଗନ୍ଧ । ସେଦିନ ସେ କାହାକୁ କିଛି ନକହି ସିଧା ତା' ବିଛଣାକୁ ଚାଲିଯାଏ । ଖାଇବାପାଇଁ ଡାକିଲେ ଖାଏ ନାହିଁ । ଚୁପ୍‌ଚାପ୍ ଶୋଇପଡ଼େ । ତା' ସ୍ଥିତି କେହି ସ୍ୱୀକାର କରନ୍ତି ନାହିଁ । ସେ ବେକାର ବେରୋଜଗାର । ପରିବାର ପ୍ରତି ତାର ଆର୍ଥିକ ଅବଦାନ ନାହିଁ । ତେଣୁ ତାର ଅନୁଶାସନ ମୂଲ୍ୟବୋଧର କିଛି ଅର୍ଥ ନାହିଁ ।

ଘଟଣାଦିନ ସେ ଟିକେ ସଅଳ ସଅଳ ଫେରିଥିଲା ଘରକୁ । ବାପାଙ୍କର ଦୃଷ୍ଟି ତା' ଉପରେ ପଡ଼ିଯିବାରୁ ସେ ହଠାତ୍ ଗର୍ଜନ କରି କହିଲେ- ତୋ ବୟସ ବେଳକୁ ମୁଁ କୁଟୁମ୍ବ ଗୋଟାକର ଦାୟିତ୍ୱ ମୁଣ୍ଡେଇଥିଲି । ଚୁଲିରେ କେମିତି ହାଣ୍ଡି ବସୁଛି ସେ ହିସାବ ରଖିଛୁ ? ଘରେ ତିନିତିନିଟା ଝିଅ ବୋଝ । ଏମିତି ଅପୋଗଣ୍ଡ ପୁଅକୁ ଜନ୍ମଦେଇ ମୁଁ ଯାହା ଅପରାଧ କରିଛି । ବାପାଙ୍କର ଏସବୁ ନିଷ୍ଫଳ କ୍ରୋଧକୁ ସେ ସବୁଦିନ ଏଡ଼େଇ ଏଡ଼େଇ ଆସୁଥିଲା । ସେଦିନ ସହଜେ ଭୋକରେ ପେଟ ଜଳୁଥିଲା ତାର । ସେ ଅସହିଷ୍ଣୁ ହୋଇ କହିଲା, କେବଳ ମୋ ଭଳି ଅପୋଗଣ୍ଡ ପୁଅ ନୁହେଁ, ଆହୁରି ତିନିତିନିଟା ଗୁଣବତୀ ଝିଅ ବି ତମେ ଜନ୍ମ ଦେଇଛ । ପୋଷିବାର ଯଦି ସାମର୍ଥ୍ୟ ନଥିଲା କୁଟୁମ୍ବ କାହିଁକି ଲମ୍ବଉଥିଲ ? ଏମିତି ଗୋଟିଏ ଦୟନୀୟ ଜୀବନ ବଞ୍ଚିବା ପାଇଁ ମୁଁ ଆଦୌ ଚାହୁଁ ନଥିଲି ।

ତା' ଉପରକୁ ଚିହିଁକି ଆସିଲେ ବାପା । ବୋଉ ମଝିରେ ଠିଆ ହେଇ ନଥିଲେ କିଛି ଗୋଟାଏ ଅଘଟଣ ଆଶଙ୍କାକୁ ଏଡ଼ି ଦେଇ ହେଉନଥିଲା । ତଥାପି ନିର୍ବିକାର ଭାବରେ ମାଆ ବାଢ଼ିଥିବା ଭାତ ଥାଳି ପାଖରେ ସେ ବସିବାକୁ ଯାଉଥିଲା ।

କ୍ରୋଧରେ ସର୍ବାଙ୍ଗ ଜଳୁଥିଲା ବାପାଙ୍କର, ସେ ଚିତ୍କାର କରି କହିଲେ- ଅପଦାର୍ଥ ! କାହା ଅର୍ଜନର ଅନ୍ନ ଧ୍ୱଂସ କରିବାପାଇଁ ବସିପଡୁଛୁ ଥାଳି ପାଖରେ ? ପୋଷିବା ପାଇଁ ମୋର ଶକ୍ତି ନାହିଁ ? ମୋ ମୁହଁ ଉପରେ ଜବାବ ଦେଉଛୁ ? ବାହାର୍- ବାହାରି ଯାଆ ମୋ ଘରୁ । ପଇସାଟିଏ ରୋଜଗାର କରିବାର କ୍ଷମତା ନାହିଁ ପାହାଡ଼ ଭଳି କଥା ?

ଏସବୁ ଗଳ୍ପ କଳାପରେ ତାର ଆଉ ଥାଳି ପାଖରେ ବସିବାର ସ୍ପୃହା ନଥିଲା । ଏକ ମୁହାଁ ହୋଇ ସେ ବାହାରି ପଡ଼ିଲା ରାସ୍ତାକୁ । ତା' ପଛେପଛେ ବୋଉ । ସେ ଆଉ ପଛକୁ ଫେରି ଚାହିଁନଥିଲା । ବୋଉ କଣ୍ଠର ବ୍ୟାକୁଳତା ତାକୁ ଦୁର୍ବଳ କରୁନଥିଲା । ରାତ୍ରିର ସେଇ ନିରନ୍ଧ୍ର ଅନ୍ଧକାର ଭେଦି ସେ କେତେବେଳେ ପହଞ୍ଚିସାରିଥିଲା ସହର ଉପକଣ୍ଠରେ । ଟେଷ୍ଟସେଡ଼ର ସିମେଣ୍ଟ ବେଞ୍ଚକୁ ଆଉଜି ସେ ଆଖି ବନ୍ଦ କରିଆଣିଲା । ଝଲକାଏ ଥଣ୍ଡାପବନ ତା' ଉପର ଦେଇ ବହିଗଲା । ଆଃ–ମୁକ୍ତିର କି ସ୍ୱାଦ । ସେ ମୁକ୍ତି ଚାହେଁ । ସଂପର୍କରୁ, ଦାୟବଦ୍ଧତାରୁ, ଜୀବନରୁ, ଜଗତରୁ । ସବୁ ରକ୍ତର ବନ୍ଧନ ତାକୁ ମନେହେଲା ତୁଚ୍ଛ ଅଳୀକ । ସବୁ ସଂପର୍କ, ଆତ୍ମୀୟତା, ଅନ୍ତରଙ୍ଗତା ସ୍ୱାର୍ଥର ସର୍ବଗ୍ରାସୀ ଆଲିଙ୍ଗନ ଭିତରେ ଅଣନିଃଶ୍ୱାସୀ । ଏଥିରୁ ଉତ୍ତରଣର ମାର୍ଗ ସେ ଖୋଜିହେଲା । ସେଇ ଖୋଜି ହେବା ଭିତରେ ସୁଲୁସୁଲିଆ ପବନରେ ତା' ଆଖି ଲାଗିଆସିଲା । ନିଦୁଆ ନିଦୁଆ ଆଖିରେ ସେ ଦେଖିଲା ବାପା ବୋଉ ଜୁଲି ସିଲି ମିଲି ଓ ବନପୁଷ୍ପା ତା' ଚାରିପଟେ ବେଢ଼ି ଯାଇଛନ୍ତି । ତା' କାନପାଖକୁ ମୁହଁ ଆଣି ଖୁବ୍ ଜୋର୍‌ରେ ଚିତ୍କାର କରି କହୁଛନ୍ତି– ତୁ ଅପାରଗ, ଭୀରୁ, ଅସମର୍ଥ, ଅଯୋଗ୍ୟ, ନପୁଂସକ । ଦୁନିଆରେ କାହାକୁ କାଣିଚାଏ ସୁଖ ଦେବାର ସାମର୍ଥ୍ୟ ତୋର ନାହିଁ । ତୁ ଦୁନିଆ ପାଇଁ ବୋଝ । ଏ କର୍ଣ୍ଣଫଟା ଚିତ୍କାର ତାକୁ ଅସ୍ତବ୍ୟସ୍ତ କରିଦେଲା । ସେ ବିଚଳିତ ହୋଇପଡ଼ିଲା । ସେଇ ଛାଇ ନିଦରୁ ବିଳିବିଳେଇ ଉଠି ଠିଆହୋଇ ପଡ଼ି ସେ କହିଲା– ହଁ ହଁ–ମୁଁ ଭୀରୁ, କାପୁରୁଷ, ଅପାରଗ । ତମମାନଙ୍କ ସହ ରହିବାର ଯୋଗ୍ୟତା ମୋର ନାହିଁ । ମୁଁ ଯିବି, ଯିବି ସବୁ ବନ୍ଧନକୁ ଛିଣ୍ଡେଇ ମୁଁ ଯିବି । ବିପରୀତ ଦିଗରୁ ଘଡ଼୍‌ଘଡ଼୍ ନାଦ କରି ମାଡ଼ିଆସୁଥିଲା ମାଲବାହୀ ଟ୍ରକ୍‌ଟା, ହଠାତ୍ ବ୍ରେକ୍ କଷିଦେଇ ଅଟକିଗଲା । ଘାଗଡ଼ା କଣ୍ଠରେ ପଞ୍ଜାବୀ ଡ୍ରାଇଭର ବାହାରକୁ ମୁହଁ ଝୁଙ୍କେଇ କହିଲା–

ହାଁ ବୁବୁଜୀ, କାହାଁ ଯାଓଗେ ?

ସୁଦର୍ଶନ ଅନ୍ୟମନସ୍କ ଭାବରେ କହିଲା– ଯାହାଁତକ୍ ଆପ ଯାଓଗେ । ଡ୍ରାଇଭର ଅଳ୍ପ ହସି କହିଲା– ମେଁ ତୋ ମୁମ୍ବାଇତକ୍ ଯାଉଙ୍ଗା । ନିରାସକ୍ତ ହୋଇ ସୁଦର୍ଶନ କହିଲା– ମେଁ ଭି ।

ଦୀର୍ଘ ଦୁଇଦିନର କ୍ଳାନ୍ତିକର ଯାତ୍ରାପରେ ସେ ବମ୍ବେରେ ପହଞ୍ଚିଥିଲା । ଷ୍ଟେସନରେ ଓହ୍ଲେଇପଡ଼ି ସେ କୃତଜ୍ଞତାରେ ବତୁରି ଯାଇ ଡ୍ରାଇଭରକୁ ଧନ୍ୟବାଦଟିଏ ଦେଲା ଓ ପକେଟରୁ କିଛି ବାହାର କରିବାକୁ ଚେଷ୍ଟା କରୁଥିଲା ।

ଡ୍ରାଇଭର ତା ମନକଥା ବୁଝିପାରିଲା ବୋଧେ । ତା' ପିଠି ଥାପୁଡ଼େଇ ଦେଇ କହିଲା– ରହନେ ଦୋ, ରହନେ ଦୋ । ଆପକା ସାଥ୍ ହମାରା ଜର୍ଣ୍ଣିଟା ବହତ୍ ବଢ଼ିଆ ଜମିଲା ବାବୁଜୀ । ସୁଦର୍ଶନକୁ ତା' ଫୋନ୍ ନମ୍ବରଟା ଦେଇ ଆବଶ୍ୟକ ହେଲେ ଫୋନ୍ କରିବାକୁ କହି ସେ ତା' ବାଟରେ ଚାଲିଗଲା ।

---

ସୁଦର୍ଶନ ପକେଟରୁ ଟେଲିଫୋନ ଡାଏରୀ ବାହାର କରି ରତିକାନ୍ତର ନମ୍ବର ଖୋଜି ଟେଲିଫୋନ ବୁଥକୁ ଗଲା । ସେ ତା ଫେମିଲି ନେଇ ବ୍ରାନ୍ଦା ଅଞ୍ଚଳରେ ରହେ । ତା' ସହ ଯୋଗାଯୋଗ କରି ସେ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ଲୋକାଲ୍ ଟ୍ରେନ୍‌ରେ ଚଢ଼ିଗଲା ।

ବାପା ବୋଉ ଭଉଣୀ ତିନିଜଣଙ୍କ ମନରେ ଆଶଙ୍କା ଓ ଉଦ୍‌ବେଗ । ଫେରିଲା ନାହିଁ ସୁଦର୍ଶନ । ଦିନେ ଗଲା, ଦୁଇଦିନ ଗଲା, ତିନିଦିନ ଗଲା । ସମସ୍ତେ ତା' ବାଟକୁ ଚାତକ ପରି ଚାହିଁ ରହିଲେ । କୌଣସି ସମ୍ବାଦ ମିଳିଲା ନାହିଁ । ଯାହାର ସ୍ଥିତି ଦିନେ ସମସ୍ତଙ୍କ ପାଇଁ ଅସହ୍ୟ ବୋଧ ହେଉଥିଲା, ତାର ନିପାରିଲା ପଣ ପ୍ରତି ରାଶିରାଶି ହେୟ ଓ ଅବଜ୍ଞା ଭାବ କୁଢ଼େଇ ହେଇପଡୁଥିଲା । ତା' ଅନୁପସ୍ଥିତି ପରିବାରକୁ ଶୋକାକୁଳ କରିଦେଲା । ଅନୁତାପ ଅନଳରେ ଦଗ୍ଧ ହେଇଗଲେ ବାପା । ସେ ବାପାଙ୍କର ଅବାଧ ଥିଲା ସତ, କିନ୍ତୁ ଏମିତି ରାଗ ଅଭିମାନରେ ଘରଛାଡ଼ି ନଥିଲା କେବେ । ସେ ପୁରାପୁରି ଭାଙ୍ଗି ପଡ଼ିଲେ । ବୋଉ କତରାଲଗା ହୋଇଗଲା ।

ସାଙ୍ଗସାଥୀ ବନ୍ଧୁବାନ୍ଧବ ସମସ୍ତେ ତନ୍ନତନ୍ନ କରି ସୁଦର୍ଶନର ସନ୍ଧାନ ନେଲେ । କୌଣସି ଫଳ ମିଳିଲା ନାହିଁ । ପୋଲିସ୍‌ର ସକଳ ପ୍ରଚେଷ୍ଟା ବ୍ୟର୍ଥ ଗଲା । ଏକ ଅନିଶ୍ଚିତ ଆଶଙ୍କାରେ ସଦାସର୍ବଦା ପରିବାରଟି ସଂତ୍ରସ୍ତ ରହିଲା ।

ହଠାତ୍ ଦିନେ ବାପା ଡାକବାଲା ହାତରୁ ରେଜେଷ୍ଟ୍ରି ଚିଠିଟା ନେଇ ଖୋଲୁଖୋଲୁ ବୋଉ ପଚାରିଲା କାହାର ଚିଠି ? ତିନି ଭଉଣୀଯାକ ଲାଗି ଆସିଥିଲେ ବାପାଙ୍କ ପାଖକୁ ।

ବାପା କହିଲେ– ରୁହ, ମୁଁ ଖୋଲୁଛି ।

ଚିଠି ସହ ଗୁନ୍ଥା ହେଇଥିଲା ଗୋଟିଏ ଚେକ୍ । (ସୁଦର୍ଶନ ପଠେଇଥିବ ପରା) ଆଶ୍ୱସ୍ତ ହେଉଥିଲେ ସମସ୍ତେ ।

ଚେକ୍‌ଟା ଉଠେଇ ଚିଠି ଉପରେ ଦୃଷ୍ଟି ନିକ୍ଷେପ କରି ଆର୍ତ୍ତନାଦ କରି ଉଠିଲେ ବାପା । ତା'ପରେ ଭଉଣୀ ତିନିଜଣ ଓ ବୋଉ ।

x x x x x x

ଚିଠି ଓ ଚେକ୍ ଆସିଥିଲା ମୁମ୍ବାଇ ସରକାରୀ ଅଫିସ୍‌ରୁ । ମୁମ୍ବାଇ ଲୋକାଲ ଟ୍ରେନ୍‌ରେ ଆତଙ୍କବାଦୀଙ୍କ ବୋମା ବିସ୍ଫୋରଣରେ ପ୍ରାଣ ହରାଇଥିଲା ସୁଦର୍ଶନ । ରତିକାନ୍ତ ଶବ ଚିହ୍ନଟ କରିଥିଲା । ଲୋକାଲ୍ ଟ୍ରେନ୍‌ରେ ନିହତ ଯାତ୍ରୀଙ୍କ ପରିବାର ପାଇଁ ପାଞ୍ଚଲକ୍ଷ ଟଙ୍କା ଓ ଜଣକୁ ଚାକିରି ଦେବାର ଘୋଷଣା କରିଥିଲେ ମହାରାଷ୍ଟ୍ର ସରକାର ।



# ଦୁଇଟି କଥା କୁହା ଆଖି

ଆଖିର ଯେ ଗୋଟିଏ ଜିଭ ଥାଏ, ଏକଥା ଅୟସ୍କାନ୍ତାକୁ ଦେଖିଲା ପରେ ଯେ କୌଣସି ହେତୁବାଦୀ ମଣିଷ ବି ନିର୍ବିବାଦରେ ବିଶ୍ୱାସ କରିଯିବ । ଯେମିତି ବିଶ୍ୱାସ କରିଥିଲା ଗୌରବ । ପ୍ରେମପ୍ରଣୟ ଅନୁରାଗ ଏସବୁ ଶବ୍ଦପ୍ରତି ଆଦୌ ଆସ୍ଥା ରଖି ନଥିବା ଗୌରବ ଅୟସ୍କାନ୍ତାକୁ ଭେଟିବା ପୂର୍ବରୁ ଯୁକ୍ତି କରୁଥିଲା ନିଜର ଜୈବିକ ଆବଶ୍ୟକତାକୁ ଚରିତାର୍ଥ କରିବାପାଇଁ ଏମିତି କେତେକ ଆତ୍ମ ପ୍ରତାରକ ଦୁର୍ବଳ ଶବ୍ଦ ସବୁର ସାହାରା ନିଏ ମଣିଷ, ଏବେ କିନ୍ତୁ ସେ ଧାରଣା ତାର ବଦଳି ଯାଇଛି ।

ଶୈଶବରୁ ବାପା ମାଆଙ୍କୁ ହରେଇ ଦାଦା-ଖୁଡ଼ୀଙ୍କ ଦୟାଦାକ୍ଷିଣ୍ୟରେ କୈଶୋର ବିତେଇଥିବା ଗୌରବ ପିଲାଦିନୁ ବଦ୍‌ରାଗୀ ଓ ଚିଡ଼ିଚିଡ଼ା । କୌଣସି ଆବେଗିକ ସଂପର୍କକୁ ସେ ଜମା ଭଲ ଦୃଷ୍ଟିରେ ଦେଖିପାରୁ ନଥିଲା । ବିଶେଷତଃ କଲେଜରେ ପଢ଼ିବାବେଳେ ପ୍ରଜାପତି ପରି ରଙ୍ଗୀନ୍ ଦିଶୁଥିବା ଓ ପରିବେଶକୁ ରଙ୍ଗୀନ୍ କରି ରଖୁଥିବା ଝିଅମାନଙ୍କ ପ୍ରତି ସେ ଅତିମାତ୍ରାରେ ଅସହିଷ୍ଣୁ ହୋଇ ପଡୁଥିଲା । ତାର

କଲେଜ ଜୀବନ ଶେଷ ହୋଇଗଲା, କେବେ କୌଣସି ଝିଅ ସହ ଭାବବିନିମୟ ଦୂରକଥା, କଥାପଦେ ହେବାର କେହି କେବେ ଦେଖି ନଥିଲେ ।

ସେ ସବୁଦିନ ଥିଲା ଏମିତି ଏକଶିଙ୍ଗିଆ, ଅବାଗିଆ ଓ ଶିଠୁଆ । ବୟସର ସୀମା ଯୌବନର ଦ୍ୱାରଦେଶ ଅତିକ୍ରମ କରିବାକୁ ବସିଥିଲେ ସୁଦ୍ଧା ତା ନିଜଆଡୁ ସେ ବିବାହ କରି ଘର ସଂସାର କରିବାର ଆଗ୍ରହ ଦେଖାଉ ନଥିଲା । ଅନୁଚିତ ଉଚ୍ଚାଭିଳାଷରେ ସର୍ବଦା ଗୁମ୍‌ସୁମ୍ ଥିବା ଖୁଡ଼ୀର ଚବିଶ ଘଣ୍ଟା ଆପତ୍ତି ଅଭିଯୋଗ ଓ ଗର୍ଜନ ତର୍ଜନ ଭିତରେ ଦାଦାଙ୍କର ଅସହାୟ ବ୍ୟକ୍ତିତ୍ୱର ଛାପ ତା ଅବଚେତନରେ ଏମିତି ରହି ଯାଇଥିଲା ଯେ ବୈବାହିକ ଜୀବନକୁ ଜୀବନ ଯନ୍ତ୍ରଣାର ମୂଳସୂତ୍ର ରୂପେ ସେ ଗ୍ରହଣ କରିନେଇଥିଲା ।

ଖୁଡ଼ୀ ବୋଧହୁଏ ସେୟା ହିଁ ଚାହୁଁଥିଲା ପୈତୃକ ସମ୍ପତ୍ତି ବୋଲି ଯାହା ଗୁଣ୍ଠେ ବିଶ୍ୱାଏ ଥିଲା, ଭବିଷ୍ୟତରେ ତାହା ଭାଗ ନହେଉ ଓ ଦାଦା ଖୁଡ଼ୀଙ୍କର ନୟନ ଶଙ୍ଖାଳି ମଣ୍ଟୁଆ ତାର ଏକମାତ୍ର ଉତ୍ତରାଧିକାରୀ ହେଉ, ଏଇୟା ଥିଲା ଖୁଡ଼ୀର ଇଚ୍ଛା । ସେଥିପାଇଁ ସେ ଗୌରବର ବିବାହ ସଂପର୍କୀୟ ସବୁ ଘଟଣ ଅଘଟଣକୁ ଚତୁରତାର ସହ ଏଡ଼େଇ ଯାଉଥିଲା ।

ପରିବାରରେ ଦାଦାଙ୍କର କିଛି କର୍ତ୍ତୃତ୍ୱ ନଥିଲା । ହାଡ଼ଭଙ୍ଗା ଖଟଣି ସାଙ୍ଗକୁ ଖୁଡ଼ୀ ପ୍ରଦତ୍ତ ମାନସିକ ନିର୍ଯ୍ୟାତନା ତାଙ୍କ ମନୋବଳକୁ ସଂପୂର୍ଣ୍ଣ ଭାଙ୍ଗି ଦେଇଥିଲା ।

ହାୟ ! ମଣ୍ଟୁଆଟା ହେଲେ ମଣିଷ ହେଇଥାନ୍ତା । ଜୀବନର ଅପରାହ୍ନଟା ଦାଦାଙ୍କର ଟିକେ ଶାନ୍ତିରେ କଟିଥାନ୍ତା । କିନ୍ତୁ ମଣ୍ଟୁଆକୁ ନେଇ ଖୁଡ଼ୀର ଆଶାତୀତ ପ୍ରତ୍ୟାଶା ସାଙ୍ଗକୁ ଲାଳନପାଳନରେ ତ୍ରୁଟି ତାକୁ ମୂଳରୁ ହିଁ ବିଗାଡ଼ି ଦେଲା ।

ପ୍ଲସ୍‌ଟୁ ଫେଲ୍ ହେଲା ପରେ ବାତରା ହେଇ ଗାଁରେ ଛତରା ଟୋକାଙ୍କ ସହ ସେ ବୁଲୁଛି । ସେହି ହେତୁ ଗୌରବ ଜୀବନର ପ୍ରତିଟି ସଫଳତା ଖୁଡ଼ୀ ପାଇଁ ଜଳନ୍ତା ରଡ଼ନିଆଁ । ଗୌରବର ଗୌରବରେ ପେଡ଼ି ଭରା ତମ୍ପ ପରି ସେ ଫଁ ଫଁ ହେଇ ରହନ୍ତି ।

ଏଇଭଳି ଭିତ୍ତିଭୂମିରେ ଗଢ଼ି ଉଠିଥିବା ମଣିଷଟାର ପାରିବାରିକ ଜୀବନ ପ୍ରତି ଅନାସ୍ଥାଭାବ ସୃଷ୍ଟି ନ ହେଇ ଆଉ କ'ଣ ହେଇଥାନ୍ତା ଯେ ?

କିନ୍ତୁ ସବୁ ଥିଓରିକୁ ଭୁଲ୍ ପ୍ରମାଣିତ କରି ଅୟସ୍କାନ୍ତା ଗୌରବର ହୃଦୟରେ ସାମୁଦ୍ରିକ ଝଡ଼ଟିଏ ସୃଷ୍ଟି କରିଦେଲା ।

ପ୍ରଥମ ସାକ୍ଷାତରୁ ହିଁ ଅୟସ୍କାନ୍ତା ତାକୁ ଲାଗୁଥିଲା ବର୍ଷାଧୁଆ ସକାଳଟା ଭଳି ଖୁବ୍ ସ୍ୱଚ୍ଛ ଓ ଆକର୍ଷଣୀୟ ।

ସେତେବେଳେ ତା ଓଠରେ ତ ଭାଷା ନଥିଲା, ତା କଥା କୁହା ଆଖି ଦୁଇଟା ଗୌରବର ଦେହମନ ପ୍ରାଣ ଓ ଚୈତନ୍ୟରେ ଅଜସ୍ର ଗଙ୍ଗଶିଉଳି ଫୁଲ ବିଛେଇ ଦେଇଥିଲା । ସେଇ ବାସ୍ନାରେ ମହ ମହ ହୋଇ ନିଜ ଅଜାଣତରେ ସିନିୟର ଅଧ୍ୟାପକ ଗୌରବର ମୁହଁରୁ ଆପେ ବାହାରି ପଡ଼ିଥିଲା ।

ଆପଣ ?

ମୁଁ ଅୟସ୍କାନ୍ତା । ଅୟସ୍କାନ୍ତା ବହିଦାର । ଇତିହାସ ଅଧ୍ୟାପିକା । ସୋନପୁର କଲେଜରୁ ବଦଳି ହୋଇ ଆସିଛି । ଏ କଲେଜରେ ଜଏନ୍ କରିବି ।

ବାସ୍– । ଝିଅମାନଙ୍କ ଝାମେଲାରେ ଆଦୌ ମୁଣ୍ଡ ଖେଳଉନଥିବା ଗୌରବ ସହକର୍ମୀମାନଙ୍କ ଦୃଷ୍ଟିରେ କୌତୂହଳ ସୃଷ୍ଟିକରି ଅୟସ୍କାନ୍ତାର ସମସ୍ତ ଆବଶ୍ୟକୀୟ ଅଫିସିଆଲ୍ ଫର୍ମାଲିଟିଜ୍ ପୂରଣ କରିଦେଲା ।

ତା'ପରଠାରୁ ଅୟସ୍କାନ୍ତା ଗୌରବକୁ ତାର ଜଣେ ଶୁଭ ଚିନ୍ତକ ବନ୍ଧୁରୂପେ ଗ୍ରହଣ କରିନେଲା ।

ଗୌରବ ବି ସତକୁ ସତ ଅୟସ୍କାନ୍ତାର ଦୁଇ ସମ୍ମୋହନୀ ଚକ୍ଷୁର ଗଭୀରତାରେ ନିଜର ଅସ୍ତିତ୍ୱ ଏମିତି ହଜେଇ ଦେଲା ଯେ ତା କପାଳର ସିନ୍ଦୂର ବିନ୍ଦୁକୁ ବି ସେ ଖେୟାଲ କଲାନାହିଁ ।

ଏଇଟା ତାର ଇଚ୍ଛାକୃତ ଥିଲା ନା ଆପେ ଆପେ ହେଇଯାଉଥିଲା, ସେ କଥା ତର୍ଜମା କରିବାକୁ ସେ ବେଳ ପାଇନଥିଲା ।

ଅପରର ପରିଣୀତା ସହ ସଂପର୍କ ଗଢ଼ି ଉଠିଲେ ସାମାଜିକ ଶୃଙ୍ଖଳାର ପ୍ରଶ୍ନ ଉଠେ । ନୀତି ଅନୀତି ଆଚାର ବ୍ୟଭିଚାରର ସୀମା ସରହଦ ଗୋଡ଼ରେ ବେଡ଼ି ପିନ୍ଧାଇ ଦିଏ ।

ଅୟସ୍କାନ୍ତାର କଥାକୁହା ଆଖି ଦୁଇଟା ମନେ ପଡ଼ିଗଲେ ହନୁମାନ ସମୁଦ୍ର ଲଂଘିବା ପରି ସକଳ ସାମାଜିକ ସୀମା ସରହଦକୁ ଲଂଘିବା ପାଇଁ ମନେମନେ ସେ ଅଣ୍ଟାଭିଡ଼ି ପକାଏ । ସେଇ ଆଖି ଦୁଇଟା ପାଇଁ ରୌରବ ନର୍କ ବୋଲି ଯଦି କିଛି ଥାଏ ଆବଶ୍ୟକ ପଡ଼ିଲେ ତାକୁ ସୁଦ୍ଧା ସ୍ୱୀକାର କରିବାପାଇଁ ମନେମନେ ନିଜକୁ ପ୍ରସ୍ତୁତ କରିନିଏ ।

କୃଷ୍ଣଚୂଡ଼ାର ସ୍ତବକରେ, ରକ୍ତଗୋଲାପର ପାଖୁଡ଼ାରେ ଉଦୟ ସୂର୍ଯ୍ୟର ଅରୁଣିମାରେ ସବୁଠି ସେ ଦେଖେ, ସେଇ ଦୁଇଯୋଡ଼ା ଘୁମନ୍ତ କଥା କୁହା ଆଖିର ନୀଳ ନିମନ୍ତ୍ରଣ । ଏକ ଅହେତୁକ ଆବେଗରେ ସେ ସ୍ୱର୍ଗମର୍ତ୍ତ୍ୟ ପାତାଳକୁ ଏକାକାର କରିବାର ସିଦ୍ଧାନ୍ତ ନେଇ ପକାଏ ।

କିନ୍ତୁ ଅୟସ୍କାନ୍ତାକୁ ସାମ୍ନାସାମ୍ନି ଭେଟିଲେ ସେ ସବୁ ଶପଥ ଭୁଲିଯାଇ ଖୁବ୍ ଅସହାୟ ହୋଇପଡ଼େ । ଅୟସ୍କାନ୍ତାର ଆଖି ଦୁଇଟା ତାକୁ ଯେତିକି ଉଚ୍ଚାଟ କରେ ତା ଚେହେରାର ଔଦାସ୍ୟ ତାକୁ ସେତିକି ଦୁର୍ବଳ କରିଦିଏ ।

ଅୟସ୍କାନ୍ତା ବିବାହିତା । ତା ମଥା ଫଳକରରେ ସିନ୍ଦୂର ବିନ୍ଦୁ । ହାତରେ ଶଙ୍ଖା, କିନ୍ତୁ ବିବାହିତା ନାରୀର ଐଶ୍ୱର୍ଯ୍ୟ ଓ ପ୍ରାଣ ପ୍ରାଚୁର୍ଯ୍ୟ ତା ଭିତରେ କୋଉଠି ଖୋଜି ପାଏ ନାହିଁ ଗୌରବ । ପରିଣୀତାର ସକଳ ସନ୍ତକ ସତ୍ତ୍ୱେ ତା ମୁହଁରେ ବୈଧବ୍ୟ ବୈଧବ୍ୟ ଭାବ ଗୌରବକୁ ଅନ୍ୟମନସ୍କ କରି ପକାଏ । ଅନେକ ଜିଜ୍ଞାସୁ ଦୃଷ୍ଟି ତା ଚାରିପଟେ ଘୂରିବୁଲୁଥିଲେ ସୁଦ୍ଧା ତା ବ୍ୟକ୍ତିଗତ ଜୀବନର ନିବୁଜ ପୃଷ୍ଠାକୁ ସେ କେବେ କାହା ପାଖରେ ଖୋଲିବାକୁ ପସନ୍ଦ କରି ନଥିଲା ।

କଲେଜରେ ଯୋଗଦେବା ପରଠାରୁ ପ୍ରଥମ କରି ସେ ତିନିଦିନ ଅନୁପସ୍ଥିତ ରହିଲା ।

ତିନି ଯୁଗର ଯନ୍ତ୍ରଣା ପାଇଥିଲା ଗୌରବ । ସଂଧ୍ୟାରେ ଅୟସ୍କାନ୍ତା ରହୁଥିବା ଘର ଆଗରେ ସ୍କୁଟର ବନ୍ଦ କରି ସେ କଲିଂ ବେଲ୍ ଟିପିଲା ।

କିଛି ସମୟ ଅପେକ୍ଷା କଲାପରେ ଜୀର୍ଣ୍ଣାଶୀର୍ଣ୍ଣା ନାରୀଟିଏ କବାଟ ଖୋଲି ବାହାରକୁ ଆସିଲା । ଗୌରବ ଆଶ୍ଚର୍ଯ୍ୟ ହେଲା । ଅୟସ୍କାନ୍ତାର ପ୍ରେତଭଳି ଦିଶୁଥିବା କିଏ ଇଏ ନାରୀ ମୂର୍ତ୍ତିଟି ? ଏଇ କ'ଣ ଅୟସ୍କାନ୍ତା ? ନିଜ ଆଖିକୁ ସେ ବିଶ୍ୱାସ କରିପାରିଲା ନାହିଁ ।

ଅପ୍ରତ୍ୟାଶିତ ଭାବେ ଗୌରବକୁ ତା ଘର ଆଗରେ ଦେଖି ହଠାତ୍ ତା ପାଟିରୁ ବାହାରି ପଡ଼ିଲା । ଆପଣ ?

ହଁ-ମୁଁ, ତିନି ଦିନ ହେଲା ଆପଣ କଲେଜ ଆସି ନାହାନ୍ତି ତ କିଛି ଅଘଟଣ ଆଶଙ୍କା କରି ମୁଁ ବ୍ୟସ୍ତ ହୋଇପଡ଼ିଲି । ଡିଷ୍ଟର୍ବ କଲି ?

କୌଣସି ଅକ୍ଷମଣୀୟ ଅପରାଧ କରି ପକାଇଥିବା ଭଙ୍ଗୀରେ କହିଲା ଗୌରବ ।

ଆରେ ନାଇଁ ନାଇଁ, ଆପଣ ସେମିତି କାହିଁକି ଭାବୁଛନ୍ତି ? ଆସନ୍ତୁ ଭିତରକୁ, ଆସନ୍ତୁ । ମୁହଁରେ ବିକଳ ହସଟିଏ ଫୁଟେଇ ନିଷ୍କ୍ରିୟ କଣ୍ଠରେ କହିଲା ଅୟସ୍କାନ୍ତା ।

ଅୟସ୍କାନ୍ତା ପଛେ ପଛେ ଗୌରବ ରୁମ୍ ଭିତରକୁ ପଶିଲା । ଏକାକିନୀ ରହୁଥିବା ଜଣେ ମହିଳାଙ୍କ କୋଠରୀ ଭିତରକୁ ପଶିବା ଗୌରବ ଜୀବନର ଇଏ

ପ୍ରଥମ ଅନୁଭବ । ସନ୍ତର୍ପଣରେ ଥରେ କୋଠରୀଟିର ଚାରିଆଡ଼କୁ ଦୃଷ୍ଟି ବୁଲେଇ ଆଣି ସେ ନିବଦ୍ଧ କଲା ଦୁଃଖରେ ଯନ୍ତ୍ରଣାରେ ଓ ଅପମାନରେ ଝାଉଁଳି ପଡ଼ିଥିବାସେଇ ଦୁଇ ନୀଳକଇଁ ଉପରେ । ସେ ଦୃଷ୍ଟିରେ କି ଯାଦୁବିଦ୍ୟା ଥିଲା କେଜାଣି, କି ଆଶା ଆଶ୍ୱାସନାର ଠିକଣା ଥିଲା କେଜାଣି, ସେଇ ନୀଳ କଇଁର ପାଖୁଡ଼ା ଭେଦି ଦୁଇଧାର ଲୁହ ତାର ଗଣ୍ଡ ଫଳକ ଦେଇ ତଳକୁ ନିଗିଡ଼ି ପଡ଼ିଲା ।

ବ୍ୟସ୍ତ ହୋଇ ପଡ଼ିଲା ଗୌରବ । ଏତେ ସୁନ୍ଦର ଆଖି ଯେ କେବେ କାନ୍ଦିପାରେ, ତାହା ତାର ଧାରଣାର ବାହାରେ ଥିଲା ।

ଏକ ଅବ୍ୟକ୍ତ ବେଦନାରେ ବସିବା ଜାଗାରୁ ଉଠି ପଡ଼ି ସେ ଅୟସ୍କାନ୍ତାର ତାଳସଜ ପରି ସୁନ୍ଦର ପାପୁଲି ଦୁଇଟାକୁ ଧରି ଆବେଗ କମ୍ପିତ ସ୍ୱରରେ କହିଲା ।

କୁହ ! କୁହ ଅୟସ୍କାନ୍ତା ! କ'ଣ ତୁମର ଦୁଃଖ ?

ବାସ୍ ! ଯୁଗଯୁଗ ଧରି ଅବଦମିତ ହୋଇଥିବା ଯନ୍ତ୍ରଣାର ନଈଟା ସବୁ ବନ୍ଧବାଡ଼ ଡେଇଁ ମୁକୁଳି ପଡ଼ିଲା ଯେମିତି ସେଇ ସୁନ୍ଦର ଦୁଇ ଆଖିର ତୋରଣ ଦେଇ ।

ସାତ ସମୁଦ୍ରକୁ ଚଳୁକରି ଦେଇଥିବା ଅଗସ୍ତି ଯେମିତି ତାର ସକଳ ବ୍ୟାଥା ଓ ବେଦନାକୁ ଆକଣ୍ଠ ପାନ କରିବାକୁ ତା ଆଗରେ ସ୍ୱୟଂ ଉଭା ହୋଇଛନ୍ତି, ସେମିତି ସେ ଅନୁଭବ କଲା ।

ମନଭରି ସେ ଚିପୁଡ଼ି ନିଗାଡ଼ି ଦେଲା ତାର ସବୁ ଅବଦମିତ କୋହ ଓ ଲୁହ ଗୌରବର ବଳିଷ୍ଠ ବାହୁ ଉପରେ ।

ସେଇ କଥା କୁହାଆଖି ଦୁଇଟାକୁ ଚାହିଁ ଆଉଥରେ ତା ପାପୁଲି ଦୁଇଟାରେ ମୃଦୁଚାପ ଦେଇ ସେ କହିଲା । କୁହ, କୁହ, ଅୟସ୍କାନ୍ତା । ଚୁପ୍ ରହିଲେ ଯେ !

ଗୌରବର ଶକ୍ତ ପାପୁଲି ଭିତରୁ ନିଜ ହାତ ଖସେଇ ଆଣିବାକୁ ତାର ଇଚ୍ଛା ହେଉ ନଥିଲା, ମଉଳା ନୀଳକଇଁର ପାଖୁଡ଼ା ଭଳି ଦିଶୁଥିବା ତା ଆଖିର ଇଙ୍ଗିତରେ ସେ ପାଖ ଟେବୁଲ୍ ଉପରେ ପଡ଼ିଥିବା ଗୋଟିଏ ଲଫାଫା ଆଡ଼କୁ ଗୌରବର ଦୃଷ୍ଟି ଆକର୍ଷଣ କଲା ।

ଫେମିଲ୍ କୋର୍ଟରେ ଦୀର୍ଘ ତିନିବର୍ଷ ହେଲା ଚାଲୁଥିବା କେସ୍‌ର ରାୟ । ଅୟସ୍କାନ୍ତା ଓ ତା ସ୍ୱାମୀର ବିବାହ ବିଚ୍ଛେଦକୁ କୋର୍ଟ ମଞ୍ଜୁରୀ ଦେଇଛନ୍ତି ।

ଗୌରବ ବାରମ୍ବାର ସେ କାଗଜ ଟୁକୁଡ଼ାକୁ ଲେଉଟାଉଥିଲା । କି ସନ୍ଦେଶ ଅଛି ଏଥିରେ ? ଅଗ୍ନିକୁ ସାକ୍ଷୀରଖି ସାତଜନ୍ମ ପାଇଁ ଜୀବନ ସଂଗ୍ରାମରେ ସହଯାତ୍ରୀ ହେବାର

ପ୍ରତିଶ୍ରୁତି ଦେଇଥିବା ଅକୃତଜ୍ଞ ସ୍ୱାମୀଟୀର ବିଶ୍ୱାସଘାତକତାର ଇସ୍ତାହାର ନା ଆଗାମୀ ଭବିଷ୍ୟତ ପାଇଁ ଏକ ନିଃସର୍ତ୍ତ ଓ ନିର୍ଭରଯୋଗ୍ୟ ଆଶ୍ରୟ ଯାଚୁଥିବା ବିଶ୍ୱସ୍ତ ସାଥୀଟି ପାଇଁ ନୋ ଅବ୍‌ଜେକ୍‌ସନ୍ ଅନୁମତି ପତ୍ର ?

ଗୌରବ କିଛି ସମୟ ପାଇଁ ଆଖି ବନ୍ଦକରି ଚିନ୍ତା କଲା ।

ତାପରେ ଜୀବନ୍ ସଂଗ୍ରାମରେ କ୍ଷତାକ୍ତ ହୋଇ ପଡ଼ିଥିବା ଖଣ୍ଡେ ଛିନ୍ନ ବଲ୍ଲରୀକୁ ସାଉଁଟି ଆଣିବା ଭଳି ସେ ଅୟସ୍କାନ୍ତାକୁ ନିଜ ଆଡ଼କୁ ଆଉଜାଇ ଆଣିଲା ।

ପ୍ରତିବାଦ କଲାନାହିଁ ଅୟସ୍କାନ୍ତା ।



# ଶାଶୁ ବୋହୂ

ସୁନୟନା ତେଲ ଗିନାଟା ଧରି ବେକଟାକୁ ଅଳ୍ପ ବଙ୍କେଇ କବାଟ ଫାଙ୍କରେ ଶାଶୁଙ୍କୁ ଥରେ ଚାହିଁଲା । କାନ୍ଥକଡ଼କୁ ମୁହଁ କରି ସେ ନିଦରେ ଶୋଇଛନ୍ତି କି ଆଖି ବନ୍ଦକରି କିଛି ଭାବୁଛନ୍ତି ସେ କଥା ଜାଣିବାର ଉପାୟ ନଥିଲା । ଏତେ ଶୀଘ୍ର ସେ ବିଛଣାକୁ ଯାଆନ୍ତି ନାହିଁ । ଆବଶ୍ୟକ ଥାଉ ବା ନଥାଉ କେହି ଶୁଣନ୍ତୁ ବା ନ ଶୁଣନ୍ତୁ କେହି ମାନନ୍ତୁ ବା ନ ମାନନ୍ତୁ କାନ୍ଥକୁ ବାଡ଼କୁ ଦେଖେଇ ଗୁଡ଼ାଏ ରବେଇ ଖବେଇ ନହେଲେ ତାଙ୍କର ଭାତ ହଜମ ହୁଏ ନାହିଁ । ସୁନୟନା ଏ ଘରେ ପାଦ ଦେଲା ଦିନ ଠୁଁ ତାଙ୍କୁ ଏମିତି ଦେଖୁଛି । ପରିବାରର ଅନ୍ୟମାନେ ବି ତାଙ୍କର ଏ ବିଚିତ୍ର ବ୍ୟବହାର ସହ ଅଭ୍ୟସ୍ତ ହୋଇଯାଇଛନ୍ତି । ସମସ୍ତେ ଖାଇପିଇ ବିଛଣାକୁ ଗଲାପରେ ସେ ତାଙ୍କ ଶୋଇବା ଘରକୁ ଯାଆନ୍ତି । ସେ ପର୍ଯ୍ୟନ୍ତ କେବଳ ଅପେକ୍ଷା କରିଥାଏ ସୁନୟନା । ହାତରେ ତେଲଗିନାଟା ଧରି ତାଙ୍କୁ ଅନୁସରଣ କରେ । ଗୋଡ଼ରେ ସୋରିଷ ତେଲ ଟିକିଏ ମାଲିସ୍ କରି ହାତ ନମାରିଲେ ତାଙ୍କୁ ନିଦ ହୁଏନାହିଁ । ସୁନୟନା କେବେ ତା କର୍ତ୍ତବ୍ୟରେ ହେଳା କରିନାହିଁ ।

ଆଜିକଥା ନିଆରା । ସକାଳ ପହରୁ ସେ ଗୁମ୍‌ସୁମ୍ ହୋଇଯାଇଛନ୍ତି । ଶୋଇବା ଘରଟାରୁ ସେ ବାହାରକୁ ବାହାରୁ ନାହାଁନ୍ତି । ନିତିଦିନିଆ କୋଳାହଳ ମୁଖର ଘରଟା ଯେମିତି ନିଶୁନ୍ ହୋଇଯାଇଛି । ସରୋଜ ଜାଣିଜାଣି ଡେରିରେ ଅଫିସରୁ ଆସିଲା । ଯେ କୌଣସି ମୁହୂର୍ତ୍ତରେ ଗୋଟିଏ ବିସ୍ଫୋରଣ ଆଶଙ୍କାକୁ ସେ ଏଡ଼େଇ ଦେଇ ପାରୁନଥିଲା । ବୋଉର ଶୋଇବା ଘର ଆଡ଼େ ଆଖି ପକାଇ କିଛି ନହୋଇଥିବାର ଅଭିନୟ କରି ସେ କହିଲା-- ବୋଉ ! ଏ ଅସମୟଟାରେ ଶୋଇଲୁ ଯେ ? କିଛି ଗୋଟିଏ ଶୃତିକଟୁ ମନ୍ତବ୍ୟ ପାଇଁ ସେ ମାନସିକ ପ୍ରସ୍ତୁତି କରିନେଇଥିଲା । କିନ୍ତୁ କିଛି ହେଲାନାହିଁ । ସେ ଆଶ୍ୱସ୍ତ ହେଲା । ତାର ଆଉ କିଛି କହିବାର ନଥିଲା । ସେ ବାଥରୁମ୍ ଚାଲିଗଲା ।

ଶେଉଳ ମାଛରେ ଆମ୍ବୁଲ ବେସର ଦେଇ ସୁନୟନା ଝୋଳ କରିଥିଲା । ଶାଶୁ ଭଲପାଆନ୍ତି ସୋରିଷ ବେସର ଝୋଳ । ସୁନୟନା ସକାଳର ଅଘଟଣକୁ ଭୁଲିବାକୁ ଚାହୁଁଥିଲା । ଶାଶୁଙ୍କ ମନଲାଖି ତରକାରୀ କଲା । ଅନ୍ୟ ଦିନ ମାନଙ୍କରେ ଛୋଟିଆ କଥାକୁ ଧରି ଦାଣ୍ଡବାଡ଼ି ବୁଲି ଗର୍ଜନତର୍ଜନ କରୁଥିବା ଶାଶୁ ଆଜି ଏତେବଡ଼ ଘଟଣାରେ ବି ଅସମ୍ଭବ ପ୍ରକାର ନିରବ ପାଲଟି ଯାଇଛନ୍ତି । ସୁନୟନା ତ ଭୟ ପାଇଯାଇଥିଲା । ଆଜି ପୁଣି (ତାର ଦୋଷ ଥାଉ ବା ନଥାଉ) ଲତା ମାଉସୀ, ଇନ୍ଦୁଖୁଡ଼ି, ଫୁଲଆଈଙ୍କ ସାମ୍ନାରେ ଶାଶୁଙ୍କୁ କ୍ଷମା ମାଗିବାକୁ ପଡ଼ିବ ।

ସକାଳୁ ଶୀଘ୍ର ସରୋଜ ଅଫିସ ଚାଲିଗଲା । ସୁନୟନା କବାଟ ବନ୍ଦକରି ମୁହଁମାଡ଼ି ଶୋଇ ନିଜକୁ ଭଲଭାବରେ ଅନୁଭବ କରୁଥିଲା । ଘଟଣା ସବୁ ତାକୁ ସ୍ୱପ୍ନଭଳି ଲାଗୁଥିଲା । ନିଜକୁ ବିଶ୍ୱାସ କରିପାରୁ ନଥିଲା । ଶାଶୁଙ୍କ ମୁହଁରୁ କଥାପଦେ ବାହାରିଲେ ଭୟରେ ତା ହାଡ଼ର ମଞ୍ଜବି ଥରି ଉଠୁଥିଲା । ସୁନୟନା ଦେହରେ କି ଶକ୍ତି ସେତେବେଳେ ସବାର ହୋଇଗଲା । ଜଳନ୍ତା କାଠଚୁଲି ଉପରେ ବସିଥିବା ଲୁହାକଡ଼େଇରେ କଡ଼ମଡ଼ ଚଡ଼ଚଡ଼ ହେଉଥିବା ମାଛଖଣ୍ଡ ଗୁଡ଼ିକୁ ଖଡ଼ିକା ଧରି ସେ ଓଲଟଉ ଥିଲା । ହଠାତ୍ ଶାଶୁ ଦୁମୁଦୁମୁ ହୋଇ ବାଡ଼ିପଟ ଦ୍ୱାର ଦେଇ ଘରଭିତରକୁ ପଶିଆସି କହିଲେ--- ବୋପା ବାଛି ବାଛି ରୋଗିଣା ବୁଢ଼ୀ ଗାଈଟେ ଦେଇଥିଲା ଯେ ମାସ ଛଅଟା କ୍ଷୀର ଦେଇଛି କି ନାହିଁ, ଆଗେ ବାଛୁରୀ ମଲା, ତା ପଛେ ପଛେ ଗାଈ । ମତେ ଦେଖାଉଛି ଗାଈ ! ମୁଁ ଦେଖିନି ଗାଈ । ତୋ ବୋପାକୁ କହ ଆଉ ଗୋଟିଏ ଗାଈ ପଠାଇଦେଉ । ତୋ ଛୁଆ କ୍ଷୀର କେମିତି ଖାଇବ ? ମୁଁ ଗଉଡ଼କୁ ମନା କରିଦେଇଛି, ସେ କାଲିଠୁଁ କ୍ଷୀର ବନ୍ଦ କରିଦେବ ।

ବ୍ୟସ୍ତ ହୋଇପଡ଼ିଲା ସୁନୟନା, ଗାଈଟା ମରିଗଲା, ଏଥିରେ ତା ବାପାଙ୍କର କି ଦୋଷ ରହିଲା ? ସେ ତ ଆଉ ମରିବାପାଇଁ ଗାଈଟା ଦେଇ ନଥିଲେ ? ମୁନ୍ନାର କ୍ଷୀର ବନ୍ଦ ହେବାକଥା କଥା ଶୁଣି ତା ମୁଣ୍ଡକୁ ପିତ୍ତ ଚଢ଼ିଗଲା । ଆଠମାସର ଛୁଆ ବଞ୍ଚିବ କେମିତି ! ଡହଡହ ହୋଇ ଜଳୁଥିବା ରଡ଼ନିଆଁ ଭିତରକୁ କାଠଖଣ୍ଡେ ଫିଙ୍ଗି ଦେଇ ସେ କହିଲା ମୁନ୍ନାକୁ କ୍ଷୀର ଖୁଆଇବା ଦାୟିତ୍ୱ ମୋ ବାପାଙ୍କର ନୁହେଁ । ସେ କାହିଁକି ଗାଈ ଦେବେ ।

ସୁନୟନା ଏ ଘରକୁ ଆସିବା ଦିନଠାରୁ ତା ଉପରେ ହୁକୁମାତି ଚଳେଇଥିବା ଓ ଦିନେ ତା ମୁହଁରୁ ହୁଡ୍ ବୋଲି ପଦେ ଶୁଣି ନଥିବା ଶାଶୁଙ୍କ ଦେହରେ ତାର ଏ ଜବାବ ଜଳନ୍ତା ଅଙ୍ଗାର ଖଣ୍ଡେ ମାଡ଼ିଦେଲା ।

ସେ ଚିହିଁକି ଉଠିଲେ । ଦୁମ୍ ଦୁମ୍ ହୋଇ ସୁନୟନା ପାଖକୁ ଧାଇଁଯାଇ କହିଲେ, ତୋର ତ ଭାରି ବହପ ଦେଖୁଛି ଲୋ ! ମୋ ମୁହଁ ଉପରେ ଜବାବ ଦେଉଛୁ ?

''କେତେ ଦିନ ଆଉ ଏମିତି କାଠପଥର ପାଲଟି ପଡ଼ି ରହିଥିବି ? ସବୁ ଅନ୍ୟାୟ ଅତ୍ୟାଚାର ସହି ସହି'' ? ସୁନୟନା କଣ୍ଠରେ ଥିଲା ଦୃଢ଼ତା । ଆଲୋ ମୁଁ ଅନ୍ୟାୟ କରୁଛି ? ଅତ୍ୟାଚାର କରୁଛି ? କ୍ରୋଧରେ ଅଜ୍ଞାନ ହୋଇଗଲେ ଶାଶୁ । ସଦ୍ୟ ସ୍ନାନକରି ଆସିଥିବା ସୁନୟନାର ଗହଳ କେଶ କେରାକ ଧରି ଦୁଇ ଝିଙ୍କା ଦେଇଦେଲେ । ଯନ୍ତ୍ରଣାରେ ଚିତ୍କାର କରି ଉଠିଲା ସୁନୟନା । ପାଟି ଶୁଣି ରୁମ୍ ଭିତରୁ ବାହାରି ଆସିଲା ସରୋଜ । ସେ ଧାଇଁଯାଇ ବୋଉ ହାତଟା ସୁନୟନାର କେଶ ଗୁଚ୍ଛରୁ ଅଲଗା କରିବାକୁ ଚେଷ୍ଟା କରୁଥିଲା । ସୁନୟନା କିନ୍ତୁ କ୍ରୋଧରେ ଜଳୁଥିଲା ଅଗ୍ନିପିଣ୍ଡ ଭଳି । ସର୍ବଦା ମାଆର ପକ୍ଷ ସମର୍ଥନ କରୁଥିବା ସରୋଜ ଉପରୁ ସୁଦ୍ଧା ତାର ଭରସା ତୁଟି ଯାଇଥିଲା । ଶାଶୁଙ୍କର ସକଳ ଗାଳି ଗଞ୍ଜଣା ନିରବରେ ସହିଯାଉଥିବା ସୁନୟନାର ପ୍ରତିକ୍ରିୟାରେ ସିଏ ବି ଶାଶୁଙ୍କ ସହ ସାମିଲ ହୋଇଯାଆନ୍ତି ଏମିତି ଏକ ଧାରଣା ତାର ସୃଷ୍ଟି ହେଲା ।

ଆଗରେ ଜଳନ୍ତା ଚୁଲି, ପଛରେ ଦୁଇଦୁଇଟା ଆକ୍ରମଣକାରୀ । ସେ କାଣ୍ଡଜ୍ଞାନ ହରାଇ ସାରିଥିଲା । ହାତ ପାଖରେ ଥିବା ଲୁହା ଫୁଙ୍କନଳାଟା ଧରି ସେ ଜୋରରେ ଆଘାତ ଦେଲା ଶାଶୁଙ୍କ ବାଁ ଗୋଡ଼ରେ । ଏମିତି ଅଭାବିତ ପରିସ୍ଥିତି ପାଇଁ ଶାଶୁ ପ୍ରସ୍ତୁତ ନଥିଲେ । ଯନ୍ତ୍ର ଚାଳିତ ଭଳି ହାତଟା ତାଙ୍କର ଥମ୍‌ହୋଇ ରହିଗଲା । କିଛି ସମୟ ପାଇଁ ମୃତ୍ୟୁ ଶୀତଳ ନିରବତା । ବିନା ବାକ୍ୟ ବ୍ୟୟରେ ଶାଶୁ ତାଙ୍କ କୋଠରୀକୁ ଚାଲିଗଲେ । ତଳକୁ ମୁହଁ ପୋତି ଅବଶିଷ୍ଟ ମାଛଭଜାରେ ମନଦେଲା ସୁନୟନା । କଥା ବଢ଼ିବାକୁ ନଦେଇ ସରୋଜ ବି ଅଫିସ ଚାଲିଗଲା ।

ସୁନୟନା ଆଶଙ୍କା କରୁଥିଲା । ଶାଶୁ ଆଜି ଖଣ୍ଡ ପ୍ରଳୟ କରିଦେବେ । ଯେତେ ହାଡ଼ଜଳା କଥା କହିଲେ ବି ତାଙ୍କ ମୁହଁ ଉପରେ ଥରୁଟିଏ ବି ମୁହଁ ଖୋଲି ନଥିବା ସୁନୟନା କେମିତି ଯେ ଏତେ ବଡ଼ କାଣ୍ଡ କରି ବସିଲା ସେ ନିଜକୁ ବିଶ୍ୱାସ କରିପାରୁନଥିଲା । ଦ୍ୱିପହର ସାରା ସେ ସଂକୁଚିତ ହୋଇ ରହିଲା ।

ରାତିରେ ଆମ୍ବୁଲ ବେସର ଦିଆ ଶେଉଳା ମାଛ ଝୋଳସହ ବାଙ୍ଗଉଠା ଭାତ ଥାଳିଏ ବାଢ଼ିଦେଇ ଏକ ଅପରାଧ ଅପରାଧ ଭାବ ଭିତରେ ଶାଶୁଙ୍କ ଖଟ ପାଖରେ ଠିଆ ହୋଇ ସେ ଡାକିଲା--- ମା, ଖାଇବ ଆସ, ଭାତ ଥଣ୍ଡା ହେଉଛି । ସୁନୟନାକୁ ଚକିତ କରିଦେଇ ସେଇ ପଦକ ଡାକରେ ଶାଶୁ ଖଟରୁ ଓହ୍ଲାଇ ପାଣି ଢାଳ ଉଠେଇ ନେଲେ । ଗୋଟାଏ ବିରାଟ ବିସ୍ଫୋରଣର ଆଶଙ୍କା ଟଳିଗଲା ।

ଶାଶୁ ବାଧ୍ୟ ଶିଶୁଟିଏ ଭଳି ଖାଇ ସାରି ବିଛଣାକୁ ଚାଲିଗଲେ । ସେ ତାକୁ କ୍ଷମା କରିଛନ୍ତି । ଆଶ୍ୱସ୍ତ ହେଲା ସୁନୟନା । ସରୋଜ ଡେରିରେ ଆସିଲା ଘରକୁ । ବୋଧହୁଏ ସେ ପରିସ୍ଥିତିକୁ ଏଡ଼େଇ ଏଡ଼େଇ ଚାଲୁଥିଲା । ସରୋଜକୁ ଭାତ ଦେଇସାରି ତା ଥାଳି ପାଖରେ ମାଛ ଭଜା ଦିଖଣ୍ଡ ଦେଲା ଓ ନିଜପାଇଁ ବାଢ଼ିଥିବା ଭାତଥାଳି ପାଖରେ ସେ ବସିପଡ଼ିଲା । ବିସ୍ମିତ ହୋଇ ଭୟ ମିଶ୍ରିତ ସ୍ୱରରେ ସରୋଜ କହିଲା- ତମେ ବସିପଡ଼ିଲ ଯେ ! ବୋଉ ଖାଇବନି ?

ବୋଉ ଖାଇସାରିଲେଣି । ଭାତ ଉପରେ ଗିନାରୁ ମାଛ ଝୋଳ ଟିକେ ଢାଳୁ ଢାଳୁ ସୁନୟନା କହିଲା । ଅବିଶ୍ୱାସ ଦୃଷ୍ଟିରେ ସରୋଜ ସୁନୟନାକୁ ଚାହିଁଲା, ଦୀର୍ଘ ତିନିବର୍ଷ ହେଲା ବୋଉର ସକଳ ନିନ୍ଦା ଅପମାନ ଓ ଭର୍ତ୍ସନାକୁ ଗଳାମାଳି କରି ବଞ୍ଚିଥିବା ସୁନୟନା ମୁହଁରେ ପ୍ରଥମଥର ପାଇଁ ଆତ୍ମବିଶ୍ୱାସର ଏକ ଝଲକ ସେ ଅନୁଭବ କଲା । ତଥାପି ତାର ପ୍ରତ୍ୟୟ ଆସୁନଥିଲା । ଇଏ କ'ଣ ସେଇ ସୁନୟନା । ବୋଉର କଟୁକଥାରେ ଅହରହ କାନ୍ଦି କାନ୍ଦି ଯିଏ ଆଖିଦୁଇଟାକୁ ବରକୋଳି ଭଳି ଫୁଲେଇ ସଦାସର୍ବଦା ମଉଳା କଇଁ ଫୁଲଟିଏ ପରି ଦିଶୁଥାଏ ? କ'ଣ ବିଶ୍ୱାସ ହେଉନି ? ବୋଉ ଖାଇଛନ୍ତି । ସୁନୟନା ଟିକେ ହସିଦେଲା । ସେଇ କଇଁଫୁଲିଆ ହସରୁ ଖିଏ ସଂକ୍ରମିତ ହୋଇଗଲା ସରୋଜ ଓଠକୁ । ଆଶ୍ୱସ୍ତ ହେଲା ସରୋଜ । ସୁନୟନା ମିଛ କହେ ନାହିଁ । ଏକ ବିରାଟ ଧର୍ମ ସଂକଟରୁ ସେ ମୁକ୍ତ ହୋଇଗଲା । ସୁନୟନା କବାଟ ଖୋଲି ଭିତରକୁ ପଶିଲା । ଶାଶୁଙ୍କ ଗୋଡ଼ପାଖରେ ବସି ଗିନାରୁ ତେଲଟିକିଏ ବାହାରକରି ପାଦରେ ମାଲିସ କରୁ କରୁ ଦୃଷ୍ଟି ତୋଳି ତାଙ୍କ ମୁହଁକୁ ଚାହିଁଲା । କେତେ କରୁଣ ଓ ଅସହାୟ ଦିଶୁଛି ସେ ମୁହଁ ।

ଯୌବନର ମଧ୍ୟାହ୍ନରେ ସ୍ୱାମୀଙ୍କୁ ହରେଇ ଏକମାତ୍ର ପୁଅର ମୁହଁକୁ ଚାହିଁ ଜୀବନ ବିତେଇଥିବା ମଣିଷଟି କି ଦୁଃଖ ଯନ୍ତ୍ରଣା ସହି ପିଲାଟିକୁ ମଣିଷ କରିଥିବ କେବଳ ସେଇ ହିଁ ଜାଣେ । ଜୀବନକୁ ତିଳ ତିଳ କରି ଅନିଶ୍ଚିତତା ଓ ଅସୁରକ୍ଷିତତାର ଜଳନ୍ତା ଅଙ୍ଗାର ଭିତରେ ଅନୁଭବ କରିଥିବା ମଣିଷଟି ଯଦି ପୁଅ ବୋହୂଙ୍କ ପାଖରେ ଟିକେ ବଡ଼ ପଣ ଜାହିର କଲା, ଆବଶ୍ୟକତାଠାରୁ ଟିକେ ଅଧିକ ଆଶା କଲା ତେବେ କି ଅନ୍ୟାୟ ସେ କଲା ? ସୁନୟନା ଭୁଲ୍ କରିଛି, ତାଙ୍କ ଉପରେ ହାତଉଠେଇ ସେ ଅକ୍ଷମଣୀୟ ଅପରାଧ କରିଛି । ଏ ଅପରାଧରୁ ତାର ମୁକ୍ତି ନାହିଁ । ସେ ଉଦ୍‌ଗତ କୋହକୁ ସିନା ରୋକି ଦେଲା କିନ୍ତୁ ଦୁଇ ଆଖି ଫାଙ୍କ ଦେଇ ନିଗିଡ଼ି ଆସୁଥିବା ଲୁହକୁ ରୋକି ପାରିଲା ନାହିଁ । ଟପ୍ ଟପ୍ ହୋଇ ଦୁଇ ବୁନ୍ଦା ଲୁହ ତା ଗାଲ ଉପର ଦେଇ ଗଡ଼ି ଆସି ଶାଶୁଙ୍କ ପାଦ ଉପରେ ପଡ଼ିଲା । ଶଶୁ ଆଖି ଖୋଲିଲେ । ସୁନୟନା କାନ୍ଦୁଛି, ସେ ବିଛଣାରୁ ଉଠିପଡ଼ି ତାକୁ ନିଜ ଆଡ଼କୁ ଆଉଜେଇ ଆଣି କହିଲେ- ଭୁଲ୍ ତ ମୁଁ କରିଛି ମା ! ତୁ କାହିଁକି କାନ୍ଦୁଛୁ ? ତୁ ଏ ଘରେ ଗୋଡ଼ ଦେଲା ଦିନଠୁଁ ଦିଟିଏ ବି ମୁଁ ତତେ ଶାନ୍ତିରେ ରଖେଇ ଦେଇନି । କେତେ ଦଣ୍ଡିଛି, କେତେ ସମ୍ପିଛି । ମୋ ଭୁଲ ମୁଁ ବୁଝିପାରିଛି ମା ! ମୁଁ ଯଦି ତତେ ଜନ୍ମ କରିଥାନ୍ତି, ତୁ କ'ଣ ମତେ କ୍ଷମାକରି ନଥାନ୍ତୁ ? ତାଙ୍କ କଣ୍ଠ ରୋଧ ହୋଇ ଆସୁଥିଲା । ଦୁଇ ପେଜୁଆ ଆଖିରେ ଜକେଇ ଆସିଲା ଲୁହ । ସୁନୟନା ତାଙ୍କ ଛାତିରେ ଲୋଟିପଡ଼ି କଇଁ କଇଁ ହୋଇ କାନ୍ଦି ଉଠିଲା । ସେଇ ଚାରିଟି ଆଖିର ଲୁହ ଯେମିତି ମମତାର ଗଙ୍ଗାଟିଏ ହୋଇ ବହିଯାଉଥିଲା ସେଥିରେ ଛଳନା ନଥିଲା, ପ୍ରତାରଣା ନଥିଲା, ଅସୂୟା ନଥିଲା କି ଅହଂକାର ବି ନଥିଲା । ସେମାନଙ୍କ ଚେତନାର ଉତ୍ତରଣ ଘଟିଥିଲା । ଦୁହେଁ ଏକ ସ୍ୱର୍ଗୀୟ ଭାବନାରେ ଉବୁଟୁବୁ ହେଉଥିଲେ । ଦୁହିଁଙ୍କ ଭିତରେ ଥିବା ଯେତେ ସବୁ ଶାନ୍ତି ଅସନ୍ତୋଷ ଓ ଅସହିଷ୍ଣୁତାକୁ ସେଇ ପବିତ୍ର ଗଙ୍ଗାର ଧାରା ଠେଲି ନେଇ ନିମିଷକ ଭିତରେ ରସାତଳଗାମୀ କରିଦେଲା । ପାଖ କୋଠରୀରୁ ଶୁଭୁଥିଲା ସରୋଜର ଆଶ୍ୱସ୍ତିର ଘୁଙ୍ଗୁଡ଼ି ।



# ଫୁଡ୍ ପଏଜନ୍

ପୁନି ପୁଅର ଫୁଡ୍ ପଏଜନ୍ ହେଇଛି । ସେ ହସ୍‌ପିଟାଲରେ ପଡ଼ିଛି । ସାଲାଇନ୍ ଚାଲିଛି । କଥାଟା ଶୁଣୁ ଶୁଣୁ ଶ୍ରୀମତୀ ଚମକି ପଡ଼ିଲେ । ତାଙ୍କ ଦେହରୁ ପାଏ ରକ୍ତ ଶୁଖିଗଲା ଯେମିତି । ସେ ଶୋଥା ପଡ଼ିଗଲେ । ମୁଣ୍ଡଟା ତାଙ୍କର ଏଡ଼େ ଯୋରରେ ବୁଲେଇ ଦେଲା ଯେ ପଡ଼ି ଯାଉ ଯାଉ ସୋଫାର ବାଡ଼ ଧରି ବସି ପଡ଼ିଲେ ।

ସେ ସବୁଦିନେ ସେମିତି । ପିଲାମାନଙ୍କର ଦେହ ପା' ହେଲେ ଭାରି ଛାନିଆ ହୋଇପଡ଼ନ୍ତି । ଡାକ୍ତର ଔଷଧ ଓ ପଥ୍ୟ ବାବଦରେ ଯାହା ଖର୍ଚ୍ଚ ତ ହୁଏ, ତା ବାଦେ ରୋଗ ବୈରାଗ ସଂପୂର୍ଣ୍ଣ ଭଲ ହେବା ପର୍ଯ୍ୟନ୍ତ ସେ ତାଙ୍କର ଚିହ୍ନା ଓ ଅଚିହ୍ନା ଠାକୁର ଠାକୁରାଣୀମାନଙ୍କ ପାଇଁ ଏତେ ମାନସିକ ଭୋଗ ଲଗେଇ ଦେଇଥା'ନ୍ତି ଯେ ସେ ସବୁ ପାଉଣା ସୁଝିବାକୁ ମୋତେ ବର୍ଷେ ଛ'ମାସ ଲାଗିଯାଏ ।

ଏସବୁ ମୋର ଦେହ ସୁହା ହୋଇଗଲାଣି । ତଥାପି ମୁଁ ତାଙ୍କୁ ପ୍ରବୋଧନା ଦେଇ କହିଲି । ତମେ ବ୍ୟସ୍ତ କାହିଁକି ହେଉଛ ? ଛୁଆଟା କୋଉଠି କ'ଣ କେତେବେଳେ ଖାଇ ଦେଇଛି, ପଏଜନ୍ ହେଇଯାଇଛି, ଠିକ୍ ହେଇଯିବନି ?

ଶ୍ରୀମତୀ କିନ୍ତୁ ଯଥା ସମ୍ଭବ ନରମ ଗଳାରେ ଗୋପନୀୟ ସତ୍ୟ ପାଠ କଲା ଭଙ୍ଗୀରେ ଆଖି ବଡ଼ ବଡ଼କରି କାନ୍ଦିଲା ସ୍ୱରରେ ମୋତେ କହିଲେ- ମୁଁ ଚଣ୍ଡାଳୁଣୀ ତାର ସର୍ବନାଶ କରିଛି । ଡରିଡରି ସେ କହିଲେ, କାଲି ଗଛରୁ ଖଣ୍ଡିଆ ହେଇ ତଳେ ପଡ଼ିଯାଇଥିବା ଅମୃତ ଭଣ୍ଡାଟିକୁ ତମେ ଫିଙ୍ଗି ଦେବାପାଇଁ କହିଥିଲ, ଏଡ଼େ ସୁନ୍ଦର ପାଚିଲା ଅମୃତ ଭଣ୍ଡାଟା, ମୋ ଲୋଭ ସମ୍ଭଳା ପଡ଼ିଲାନାହିଁ । ପୁନୀକୁ ଦେଇଦେଲି । ସେଇଆକୁ ଖାଇ ତାପୁଅର ଏ ଅବସ୍ଥା । ସାପ କି ବେଙ୍ଗ କି ବିଷାକ୍ତ ଜନ୍ତୁ ତାକୁ ଖଣ୍ଡିଆ କରି ଖାଇଥିବେ । ସେଇ ତା ପେଟରେ ବିଷ ହେଇଯାଇଛି ।

ମୋର ମନେପଡ଼ିଲା । ଗଛର ପ୍ରଥମ ଫଳଟା । ଶ୍ରୀମତୀଙ୍କର କଡ଼ା ତାଗିଦ୍ ଥିଲା, ଫଳଟା ତୋଳା ହେବନାହିଁ, ସଂପୂର୍ଣ୍ଣ ଗଛରେ ପାଚିଲାପରେ ଠାକୁରଙ୍କୁ ଲାଗି କରାହେବ । ଦୁର୍ଯ୍ୟୋଗକୁ କାଲି ରାତିରେ ସେଇଟା ତଳେ ପଡ଼ି ଛତରଶାଳ ହେଇଯାଇଥିଲା । ସକାଳୁ ସକାଳୁ ବଗିଚାକୁ ଯାଇ ମୁଁ ତଳେ ପଡ଼ିଥିବା ଫଳଟିକୁ ଦେଖିଲା ପରେ ମୋ ମନଟା ଖରାପ ହେଇଯାଇଥିଲା, ରାତିସାରା ପାଚିଲା ଫଳଟା ଅରମା ଭର୍ତ୍ତି ବାଡ଼ିରେ ପଡ଼ି ରହିଲା । ସାପ କି ବେଙ୍ଗ କିଏ ମୁହଁ ମାରିବା ଆଶଙ୍କା ଅମୂଳକ ନୁହେଁ । ଫଳଟାକୁ ଫିଙ୍ଗିଦେବାପାଇଁ ତାଗିଦ୍ କରି ମୁଁ ଅଫିସ୍ ଚାଲିଗଲି ।

କିନ୍ତୁ ଶ୍ରୀମତୀଙ୍କର ଅଦୂରଦର୍ଶିତାର ଫଳ ଏପରି ଅଭାବନୀୟ ପରିସ୍ଥିତି ସୃଷ୍ଟି କରି ବସିଲା ।

ମୁଁ ବ୍ୟସ୍ତହୋଇ ପଡ଼ିଲି । କ'ଣ ଏବେ କରିବା ଯେ ! ଯଦି ପିଲାଟିର କ'ଣ ଭଲମନ୍ଦ ହୋଇଯାଏ, କୋର୍ଟ କଚିରୀ ସେ ଦୁନିଆ ପାଲା । ପକେଟ ଅଣ୍ଡାଳିଲି । ମାସଶେଷ ଟଙ୍କା ଶହେଟା ପଡ଼ିଥିଲା । ସେଇଟିକୁ ସମ୍ଭଳ କରି ମୁଁ ଚାଲିଲି ହସପିଟାଲ ଆଡ଼େ । ମନେପଡ଼ିଲା ଭାଗବତର ଗୋଟିଏ ଉକ୍ତି- ଆପଣା କଲା କର୍ମମାନ, ଆଗୁ ହୋଇବ ସାବଧାନ ।

ଶ୍ରୀମତୀ ଯିବାକୁ ଚାହୁଁଥିଲେ, ମୁଁ ତାଙ୍କୁ ଆଖି ଦେଖେଇଲି ରୁହ ! ମୁଁ ପରିସ୍ଥିତି କ'ଣ ଦେଖି ଆସେ । ଅଯଥାରେ ସେଠିକି ଯାଇ ଆଉ ଗୋଟିଏ ସମସ୍ୟା ସୃଷ୍ଟି କରି ବସିବ ।

ମୁଁ ହସପିଟାଲ ପହଞ୍ଚି ଦେଖିଲି । ପୁନୀ ପୁଅ ନିସ୍ତେଜ ହେଇ ପଡ଼ିରହିଛି, ଏ ପର୍ଯ୍ୟନ୍ତ ଚେତା ଫେରିନି । ଜଣେ ଡାକ୍ତର ନଇଁ ପଡ଼ି ତାକୁ ପରୀକ୍ଷା କରୁଥିଲେ । ମତେ ଦେଖି ପୁନୀ ଭୋ ଭୋ ହୋଇ କାନ୍ଦି ଉଠିଲା, ନର୍ସ ଇଙ୍ଗିତରେ ତାକୁ ଚୁପ୍ ହେବାପାଇଁ ନିର୍ଦ୍ଦେଶ ଦେଲେ । ଡାକ୍ତରବାବୁ ପୁଅକୁ ପରୀକ୍ଷା କରିସାରିବାପରେ ମୁହଁ

ଉଠାଇଲା ବେଳକୁ ମୁଁ ବ୍ୟସ୍ତ ହୋଇ କହିଲି । ପିଲାର ଅବସ୍ଥା କେମିତି ଅଛି ? ସେ ଭଲ ହେଇଯିବ ତ ?

ପ୍ରଶ୍ନିଳ ଦୃଷ୍ଟିରେ ଡାକ୍ତରବାବୁ ମୋତେ ଚାହିଁଲେ । ମୁଁ ସଦାନନ୍ଦ ମିଶ୍ର । ସ୍ଥାନୀୟ ତହସିଲ୍‌ରେ କିରାନୀ କାମ କରେ । ପୁନୀ ଆମ ଘରର ଠିକା ଚାକରାଣୀ । ମୁଁ ଏକା ନିଃଶ୍ୱାସକେ ଏତକ କହି ପକାଇଲି ।

ହଁ କଣ୍ଡିସନ୍ କ୍ରିଟିକାଲ୍ । ତଥାପି ଚେଷ୍ଟା ତ ଚାଲିଛି । ଆପଣ ମୋ ସାଙ୍ଗରେ ଆସନ୍ତୁ । ମୁଁ ଯନ୍ତ୍ରଚାଳିତ କଣ୍ଢେଇଭଳି ତାଙ୍କ ପଛେ ପଛେ ଚାଲିଲି । ଡାକ୍ତରବାବୁ ପ୍ରେକ୍ସ୍ରିପ୍ସନଟିଏ ମୋ ହାତକୁ ବଢ଼େଇ ଦେଉ ଦେଉ କହିଲେ, ଚେତା ଫେରିବାକୁ ଦୁଇତିନି ଘଣ୍ଟା ଲାଗିବ । ତାପରେ ତା ବିଷୟରେ ଯାହା କହିହେବ ।

ମୁଁ ପ୍ରେସ୍କ୍ରିପ୍‌ସନ୍ ଧରି ମେଡିସିନ୍ ଷ୍ଟୋରକୁ ଗଲି । ଷ୍ଟୋରକିପର୍ ମୋର ଜଣାଶୁଣା । ଔଷଧତକ ପ୍ୟାକିଂକରି ସେ ମୋ ହାତକୁ ଏକ ହଜାର ପଚାଶ ଟଙ୍କାର ବିଲ୍‌ଟିଏ ବଢ଼େଇଦେଲା । ମଁ ତାଟକା ହେଇଗଲି । ମୁଁ ଛାତି ପକେଟରୁ ଶହେଟଙ୍କିଆ ନୋଟଟି ବାହାର କରି ତାର ସାମର୍ଥ୍ୟକୁ ପରୀକ୍ଷା କରୁଥିଲି ।

ଔଷଧ ପ୍ୟାକେଟ୍ ପାଇଁ ଏହା ସମୁଦ୍ରକୁ ଶଙ୍ଖେ ଭଳି । ଷ୍ଟୋର କିପର୍ ମୁହଁକୁ ଚାହିଁ ଆନ୍ତରିକତାଭରା ସ୍ୱରରେ କହିଲା–

କାହାର କ'ଣ ହେଇଚି କି ଆଜ୍ଞା ?

ମୋ ପାଟିରୁ ପାଚିଲା ଅମୃତଭଣ୍ଡା କଥା ବାହାରି ଆସୁଥିଲା । ନିଜକୁ ସମ୍ଭରଣ କରିନେଇ କହିଲି ।

ଆମ ଠିକା ଚାକରାଣୀର ପୁଅକୁ ଫୁଡ୍ ପଏଜନ୍ ହେଇଯାଇଛି ତ, ସେ ହସପିଟାଲରେ ପଡ଼ିଛି । ତାରି ପାଇଁ ଏ ଔଷଧ ନେଉଛି । ମୋ ଦୋଦୁଲ୍ୟମାନ୍ୟ ଭାବ ଦେଖି ସେ ମୋ ମାନସିକ ଅବସ୍ଥା ବୁଝିପାରିଲା । ମୁହଁରେ କେମିତି ଗୋଟିଏ ଆପଣାର ଭାବ ଫୁଟେଇ ସେ କହିଲା– ଔଷଧତକ ନେଇଯାଆନ୍ତୁ ଆଜ୍ଞା ! ପରେ କେତେବେଳେ ଆସି ବାକି ପଇସାତକ ଦେଇ ଦେବେନି ?

ମୁଁ ସେୟାହିଁ କଲି । ହସ୍‌ପିଟାଲରୁ ଫେରିବା ବାଟରେ ବଡ଼ବାବୁ ଦେଖାହେଲେ । କି ହୋ ସଦାନନ୍ଦ ବାବୁ । ବଡ଼ ବାବୁ ଚିଲ୍ଲେଇ ଉଠିଲେ । ଏ ପଟରେ କୁଆଡ଼େ ? ମୁଁ ସାଇକେଲ୍ ଉପରେ ବସି ଗୋଟିଏ ଗୋଡ଼ ମାଟିରେ ଅଟକେଇ ତାଙ୍କୁ କହିଲି ।

ଆମ ଠିକା ଚାକରାଣୀ ପୁଅଟାର ଫୁଡ୍ ପଏଜନ୍ ହେଇଛି । ସେ ହସପିଟାଲରେ ଅଛି ତ ! ସେଇଥିପାଇଁ ଟିକେ ଆସିଥିଲି ଏୟାଡ଼େ ।

ବଡ଼ବାବୁ ତାଙ୍କ ଚିରାଚରିତ ଢଙ୍ଗରେ କହିଲେ- ସରକାର ଏମାନଙ୍କର ଶିକ୍ଷା ସ୍ୱାସ୍ଥ୍ୟ ଓ ପରିମଳ ପାଇଁ ପାଣିପରି ପଇସା ବୁହାଇ ଚାଲିଛନ୍ତି, ହେଲେ ଏମାନେ ଯଥା ପୂର୍ବମ୍ ତଥା ପରମ୍ । ଅଖାଦ୍ୟ ଖାଇବେ । ଅପରିଷ୍କାର ଜାଗାରେ ରହିବେ । ସେମାନଙ୍କୁ ଫୁଡ୍ ପଏଜନ୍ ହବନିତ ଆଉ କାହାକୁ ହେବ ?

ଆଲୋଚନା ଆଗକୁ ବଢ଼େଇବା ନିରାପଦ ନୁହେଁ ଚିନ୍ତାକରି ମୁଁ ସାଇକଲ୍ ଆଗକୁ ଗଡ଼େଇଲି ।

ଘରେ ପହଞ୍ଚିଲାବେଳକୁ ପିଲାମାନେ ସ୍କୁଲକୁ ବାହାରି ଯାଇଥିଲେ । ଶ୍ରୀମତୀ ଠାକୁର ଘର କବାଟ କିଳି ଭିତରେ ଗାୟତ୍ରୀ ମନ୍ତ୍ର ଜପୁଥିଲେ । ପାଞ୍ଚପାଳି ପଞ୍ଚାନନ ମେଳା ଓ ଷୋଳ ଶୁକ୍ରବାର ମନାସ ସରିଲାଣି ।

ଆଖି ଦୁଇଟା ତାଙ୍କର ପିଆଜ ଚୋପା ଭଳି ରଙ୍ଗା ଦିଶୁଥିଲା । କାନ୍ଦୁଥିଲେ କି କ'ଣ ।

ଭୟବିଜଡ଼ିତ କଣ୍ଠରେ ସେ ମୋତେ ସଂକ୍ଷିପ୍ତ ପ୍ରଶ୍ନଟିଏ ପଚାରିଲେ-

କ'ଣ ଦେଖିଲ ?

ମୁଁ ଉଦାସ ଭାବରେ କହିଲି-

ପିଲାର ଚେତା ଫେରିନି । ଔଷଧ ଇଂଜେକ୍ସନ୍ ପ୍ରାୟ ୧୦୦୦ଟଙ୍କା ପଡ଼ିଲା । ଏକଦମ୍ ପାୱାରଫୁଲ୍ ମେଡିସିନ୍ । ୨/୩ଘଣ୍ଟା ପରେ ଯାହା ଜଣାପଡ଼ିବ ।

ମୁଁ ଯେ ଦୋକାନରୁ ଔଷଧ ଧାରକରି ଆଣିଛି, ତାଙ୍କୁ ଅଛପା ରହିଲାନି ।

ଏବର୍ଷ ସାବିତ୍ରୀ ଅମାବାସ୍ୟାକୁ ବମ୍‌କେଇ ପାଟ ଖଣ୍ଡେ କିଣିବେ ବୋଲି ସେ ମାସକୁ ଶହେ ଦୁଇଶହ ଲେଖାଁ ସଞ୍ଚୟକରି ୧୫୦୦ ଟଙ୍କା ରଖିଥିଲେ । ଅବଶିଷ୍ଟ ପଇସା ସେ ମୋଠୁଁ ଦାବୀ କରି ଆସୁଥିଲେ । ମୁଁ ବି ତାଙ୍କୁ ପ୍ରତିଶ୍ରୁତି ଦେଇଥିଲି । ସେତକ ଆଣି ସେ ମୋ ହାତକୁ ବଢ଼େଇଦେଇ ବାଷ୍ପରୁଦ୍ଧ କଣ୍ଠରେ କହିଲେ, ୧୫୦୦ ଟଙ୍କା ଅଛି । ମେଡିସିନ୍ ଷ୍ଟୋରର ପଇସା ସୁଝିଦେଇ ବାକିତକ ପାଖରେ ରଖିଥାଅ । ଆଉ କ'ଣ ଦରକାର ପଡ଼ିପାରେ ।

ପଇସାତକ ନେଇ ମୁଁ ପକେଟରେ ରଖୁ ରଖୁ ହତାଶ ସ୍ୱରରେ କହିଲି, ମୋତେ କ'ଣ ଦିଟା ବାଢ଼ିଦିଅ । ମାର୍ଚ୍ଚ ମାସ । ଗୁଡ଼ାଏ କାମ ପଡ଼ିଛି । ଫେରିଲା ବେଳକୁ ମୁଁ ହସ୍‌ପିଟାଲ ହେଇ ଆସିବି ।

ଶ୍ରୀମତୀ ରୋଷେଇ କରିନଥିଲେ । ପିଲାମାନେ ପଖାଳ ଖାଇ ସ୍କୁଲ ଚାଲିଯାଇଥିଲେ । ମୋର ଭୋକ ବି ମରିଯାଇଥିଲା । ଖାଲି ନାମକୁ ମାତ୍ର କ'ଣ ଦିଟା ଇୟାଡୁ ସିୟାଡୁ ନାକରେ କାନରେ ଗୁଞ୍ଜି ମୁଁ ବାହାରି ପଡ଼ିଲି ।

ଶ୍ରୀମତୀ ଦାଣ୍ଡ କବାଟଟା କିଳି ପୁଣି ଅଖିଆ ଅପିଆ ଠାକୁରଙ୍କ ଆଗରେ ଅଖଣ୍ଡ ଦୀପଟିଏ ଜାଳି ମୁହଁ ମାଡ଼ି ପଡ଼ି ରହିଲେ ।

ସଂଧ୍ୟାବେଳେ ଘରକୁ ଫେରିଲା ବେଳକୁ ସକାଳର ବିଷର୍ଣ୍ଣତା ମୋର ଆଉ ନଥିଲା । ପୁନୀ ପୁଅକୁ ଡାକ୍ତର ଡିସ୍‌ଚାର୍ଯ କରିଦେଇଥିଲେ । ସେ ତା ପୁଅକୁ ନେଇ ଘରକୁ ଚାଲିଯାଇଥିଲା ।

ମୋଠାରୁ ସକଳ ବୃତ୍ତାନ୍ତ ଶୁଣି ଶ୍ରୀମତୀଙ୍କ ମୁଣ୍ଡରୁ ଷାଠିଏ ମହଣର ବୋଝଟିଏ ଯେମିତି ଖଲାସ ହୋଇଗଲା । ସେ ଖୁସିରେ ଅଧୀର ହୋଇ ବାଷ୍ପରୁଦ୍ଧ କଣ୍ଠରେ ଦୁଇହାତ ଯୋଡ଼ି କପାଳରେ ଲଗାଉ ଲଗାଉ କହିଲେ ।

ଭଗବାନ ବଡ଼ ଲୋକ । ଈଶ୍ୱରଙ୍କ ପ୍ରତି ଗଭୀର କୃତଜ୍ଞତାର ଦୁଇଧାର ଲୁହ ତାଙ୍କ ଆଖିରୁ ନିଗିଡ଼ି ତାଙ୍କ ଗାଲ ଉପର ଦେଇ ବହିଗଲା ।

ଆମେ ଦୁହେଁ ସେମିତି ସେଇ ଅବସ୍ଥାରେ ପୁନୀଘର ଆଡ଼େ ମୁହାଁଇଲୁ ।

ତାଘର ଦରଆଉଜା ହୋଇଥିଲା । ଆମେ ଦୁହେଁ କବାଟ ଠେଲି ଭିତରକୁ ଗଲୁ ।

ଅଗଣାରେ ଶପ ଖଣ୍ଡକରେ ପୁଅ ଶୋଇଥିଲା । ପୁନୀ ତା ଦେହରେ ହାତ ବୁଲଉଥିଲା । ଆମକୁ ଦେଖି ଅଧା ଛିଣ୍ଡିଯାଇଥିବା ଶପ ଖଣ୍ଡେ ପକେଇ ଦେଉ ଦେଉ ସେ କହିଲା ।

ମାଆ ବାବୁଙ୍କ ପାଇଁ ମୁଁ ମୋ ଛୁଆକୁ ଫେରିପାଇଲି । ବାବୁ ହସପିଟାଲ ଯାଇ ପାଣିପରି ପଇସା ଖର୍ଚ୍ଚ କରି ନଥିଲେ ମୁଁ କ'ଣ ଏତେବଡ଼ ବିପଦରୁ ପାରି ହେଇ ପାରିଥାନ୍ତି ?

ଶ୍ରୀମତୀ ମୁହଁରେ କିଛି କହିବାପାଇଁ ଭରସି ପାରୁ ନଥିଲେ । ଦୁଃଖ ଓ ପଶ୍ଚାତ୍ତାପରେ ତାଙ୍କ ଛାତି ଭିତରଟା ଘାଣ୍ଟି ଚକଟି ହେଇଯାଉଥିଲା ।

ପୁନୀ ଆହୁରି କହି ଚାଲିଥିଲା । ଗରମ ଗରମ ମାଣ୍ଡିଆ ଜାଉ ଟିକେ ମୁଁ ତାପାଇଁ କଂସାରେ ବାଢ଼ି ଦେଇ ତମ ଘରକୁ ଚାଲିଗଲି । ତରବରରେ ମୁଁ ପୋଡ଼ାମୁହିଁ ତାକୁ ଢାଙ୍କିବାପାଇଁ ଭୁଲି ଯାଇଥିଲି । ସେଇଥିରେ ପୋକ ଯୋକ ପଡ଼ିଲା କି କ'ଣ ସେଇ ଟିକକ ତ ପିଇଦେଇ ମୋ ପୁଅର ଏ ଅବସ୍ଥା । ମୁଁ ଶ୍ରୀମତୀ ମୁହଁକୁ ଚାହିଁଲି, ସେ ତଥାପି ପ୍ରକୃତିସ୍ଥ ହୋଇନଥିଲେ ।

କାଲି ତମେ କେଡ଼େ ସରାଗରେ ଅମୃତ ଭଣ୍ଡାଟା ଦେଇଥିଲ । ତାକୁ କ'ଣ ଆମେ ଖାଇଚୁ କି ମାଆ ? ଏମିତିରେ ତ ଘର ବୁଡ଼ି ପାଣି ଆଣୁଏ, ଆଉ ତା କଥା କିଏ ପଚାରୁଛି ? ମୁଁ ହତଭମ୍ବ ହୋଇପଡ଼ିଲି ।

ଆକାଶରୁ ଖସିପଡ଼ିଲା ଭଳି ଅନୁଭବ କଲେ ଶ୍ରୀମତୀ । ତାହେଲେ ତୁଚ୍ଛାଟାରେ ଏତେ ଉଦ୍‌ବେଗ ଓ ମାନସିକ ଚାପ ଭୋଗୁଥିଲୁ ଆମେ !

ପୁନୀର ଘରର ଗୋଟିଏ କୋଣରେ ଯେମିତିକୁ ସେମିତି ଥୁଆ ହେଇଥିଲା ପାଚିଲା ଅମୃତଭଣ୍ଡା ।

ହଠାତ୍ ଶ୍ରୀମତୀ କାଳିସୀ ଲାଗିଲାପରି ବସିବା ଜାଗାରୁ ଉଠି ନଇଁ ପଡ଼ି ଅମୃତଭଣ୍ଡାଟିକୁ ଦୁଇ ହାତରେ ଟୋକିଧରି ଦରଜା ଦେଇ ବାହାରକୁ ଫିଙ୍ଗି ଦେଉଦେଉ କହିଲେ ।

ନା-ନା- ଏ ଅମୃତଭଣ୍ଡା ତୁ ଖାଆନା । ଏଥିରେ ବି ଫୁଡ୍ ପଏଜନ୍ ହୋଇପାରେ । ତାପରେ ଏକା ନିଶ୍ୱାସକେ ଏକ ରକମ ଧାଇଁ ଧାଇଁ ସେ ପୁନୀଘରୁ ବାହାରି ରାସ୍ତାରେ ପାଦ ଥୋଇଲେ । ନିଶବ୍ଦରେ ମୁଁ ତାଙ୍କୁ ଅନୁସରଣ କଲି ।



# କଳଙ୍କର ଟୀକା

ଘାଟ ପାଖରେ ପହଞ୍ଚିଲା ବେଳକୁ ପଶ୍ଚିମ ଆକାଶରେ ସୂର୍ଯ୍ୟଦେବତା ଢଳିବାକୁ ଆରମ୍ଭ କଲେଣି । ଖରାଟା ଟିକେ ମହଲଣ ପଡ଼ିଗଲାଣି । ସୂର୍ଯ୍ୟଙ୍କର ତେରଛା କିରଣ ଗୋବରୀ ନଈର ଛାତିରେ ଯେମିତି ଆଉଟା ସୁନାର ଏକ ବହଳ ପରସ୍ତ ବିଛେଇ ଦେଇଛି । ମୁଁ ଅଭିଭୂତ ହୋଇପଡ଼ିଲି । ସହରର କର୍ମଜଞ୍ଜାଳ ଭିତରେ ସୂର୍ଯ୍ୟଙ୍କର ଖବର ରଖିହୁଏ ନାହିଁ । କେତେବେଳେ ସେ ଉଦୟ ହୁଅନ୍ତି, ଆଉ କେତେବେଳେ ଅସ୍ତ । ତାଙ୍କୁ କେନ୍ଦ୍ରକରି ପୃଥିବୀ ବକ୍ଷରେ ରୂପରଙ୍ଗର ପସରା; କିଛି ଜାଣି ହୁଏ ନାହିଁ । ସତେ ଯେମିତି ଅଯୁତ ଯୁଗ ପରେ ମୁଁ ଏ ମାଟିରେ ପାଦ ଦେଲି, ସେମିତି ମୋତେ ମନେହେଲା ।

ଘାଟପାଖରୁ ଦୁଇ କିଲୋମିଟର ଆମ ଗାଁ । ପୂର୍ବେ ରାସ୍ତାଘାଟର ସୁବିଧା ନଥିଲା । ଘାଟ ପାଖରୁ ଗାଁ ପର୍ଯ୍ୟନ୍ତ ଲମ୍ବି ଯାଇଥିବା ପାଟ ଭିତରେ ପଶି ଗାଁକୁ ଯିବାକୁ ହେଉଥିଲା । ଏବେ କିନ୍ତୁ ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନାର ଅନ୍ତର୍ଭୁକ୍ତ ହୋଇ ଗାଁକୁ ନାଲି ଗେଙ୍ଗୁଟି ପଥରର

ରାସ୍ତାଟିଏ ଲମ୍ବିଯାଇଛି ନିରାସକ୍ତ ଅଜଗର ପରି । ମୁଁ ଆଶ୍ୱସ୍ତ ହେଲି । ରାସ୍ତାରେ ଆତଯାତ ମୁହଁଗୁଡ଼ାକ ଅଚିହ୍ନା ହେଲେ ବି ସବୁ ଲାଗୁଥିଲା ଚିହ୍ନା ଚିହ୍ନା, ଆପଣାର ଆପଣାର । ଏକ ଆତ୍ମୀୟତାର ରଙ୍ଗ ଯେମିତି ସେଠି ମାଖି ହୋଇ ଯାଇଥିଲା । ଏଇ ଟିକକ ଭାବ ପ୍ରୀତି ପାଇଁତ ଯୋଜନ ଯୋଜନ ଦୂରତ୍ୱରେ ରହିଲେ ବି ମନଟା ଟାଣି ହୋଇ ଆସେ ଏଇଠିକି । ଏଇ ନଈପଠା, ପୋଖରୀ ହୁଡ଼ା, ତୋଟାମାଳ ବିଲପାଟ, ଏସବୁର ଆକର୍ଷଣ ଅଲଂଘନୀୟ । ମୁଁ ସୁଟ୍‌କେଶ୍ ଧରି ଗାଁ ଆଡ଼େ ମୁହାଁଉଥିଲି । ହଠାତ୍ ସେଇ ଅଧାପକ୍କା ଅଧାକଚ୍ଚା ରାସ୍ତାରେ ଅଟୋଟିଏ ମୋ ପାଖରେ ଅଟକିଲା । ଅଟୋ ଚାଳକ ବେପରୁଆ ଭଙ୍ଗୀରେ  ପଚାରିଲା-ବାବୁ ! କୁଆଡ଼େ ଯିବେ ?

ମୋ ଧ୍ୟାନ ଭଗ୍ନ ହେଲା ଅଟୋ ଚାଳକର ପ୍ରଶ୍ନରେ । ମୁଁ ଦୃଷ୍ଟି ତୋଳି ଚାହିଁଲି । କିଛି ଚିନ୍ତା କରିବା ପୂର୍ବରୁ ଆବେଗ ପ୍ରବଣ ହୋଇ କହିଉଠିଲି- ଆରେ କୈବଲ୍ୟ, ତୁ ?

ଅଟୋଚାଳକ ଅସହିଷ୍ଣୁ ହୋଇ କହିଲା- ନାହିଁ ବାବୁ ମୁଁ କୈବଲ୍ୟ ନୁହେଁ, ସୁଦର୍ଶନ ।

ମୁଁ ନିଜକୁ ନିୟନ୍ତ୍ରଣ କଲି । ମୁହୂର୍ତ୍ତକ ପାଇଁ ଏକ ଆବେଗିକ ଆଶ୍ଳେଷରେ ମୁଁ ସ୍ଥାନ କାଳ ପାତ୍ର ଜ୍ଞାନ ହରାଇ ବସିଥିଲି ଯେମିତି । କୈବଲ୍ୟ ସହ ପିଲାଟିର ଅଭେଦ୍ୟ ସାମ୍ୟ ପରିଲକ୍ଷିତ ହେଉଥିଲେ ବି କୈବଲ୍ୟ ଯେ ଆଉ ୨୦/୨୫ ବର୍ଷର ଛନଛନିଆ ଜୁଆନ୍ ଟୋକା ହୋଇନଥିବ, ମୁଁ ଏ କଥା ଚିନ୍ତା କରିବାକୁ ସମୟ ପାଇନଥିଲି । ଇଏ ନିଶ୍ଚୟ ତା' ପୁଅ । ସେଇ ଆଖି, ସେଇ ନାକ, ସେମିତି ମୁଖ ଦାନ୍ତୁଡ଼ା । ମୁଁ ଆହୁରି ଆନ୍ତରିକତା ସ୍ୱରରେ ତାକୁ ଆପଣେଇ ବାହାଦୁରୀଟିଏ ନେବା ପାଇଁ ପଚାରିଲି- ତୁ ବିଷ୍ଣୁପୁର କୈବଲ୍ୟ ପରିଡ଼ା ପୁଅ ଟି ! ଦେଖିଲୁ ମୁଁ କେମିତି ତତେ ଚିହ୍ନିଲି !

ତା' ଦେହରେ ଯେମିତି କିଏ ଖଣ୍ଡେ ଜଳନ୍ତା ଅଙ୍ଗାର ମାଡ଼ିଦେଲା । କକ୍ଷଚ୍ୟୁତ ଉଲ୍‌କା ପିଣ୍ଡଟିଏ ଭଳି ସେ ଅଶାନ୍ତ ହୋଇପଡ଼ିଲା । ତଥାପି ତା'ର ଭାବାବେଗକୁ ଦମନ କରି ସେ ବିରକ୍ତ ହୋଇ କହିଲା- 'ମୁଁ' କୋଉ କୈବଲ୍ୟ ପରିଡ଼ା ଫୈବଲ୍ୟପରିଡ଼ା ପୁଅ ନୁହେଁ । ମୋ ବାପା ପଞ୍ଚାନନ ପଣ୍ଡା ।''

ମୁଁ ପ୍ରକୃତିସ୍ଥ ହେଲି । ପିଲାଟିର ବେପରୁଆ ଭାବଭଙ୍ଗୀ, ତା'ର କଥା କହିବା ଶୈଳୀ ମୋତେ ଟାଣି ନେଇଗଲା ୨୦/ ୨୫ବର୍ଷ ତଳକୁ । ମୋ ସହ ଏକ ସଙ୍ଗେ ଶୈଶବ, କୈଶୋର ଓ ଯୌବନକୁ ଅନୁଭବ କରିଥିବା କୈବଲ୍ୟ ଥିଲା ମୋର ଅନ୍ତରଙ୍ଗ ବନ୍ଧୁ । ଆଦ୍ୟ ଯୌବନରୁ ପ୍ରେମ-ପ୍ରଣୟ, ପ୍ରୀତି ଏସବୁ

ପ୍ରତି ସମ୍ପୂର୍ଣ୍ଣ ନିରାସକ୍ତ ଥିବା କୈବଲ୍ୟ ହଠାତ୍ ଦିନେ ଭାରି ଗୁମ୍‌ସୁମ୍ ଜଣାପଡ଼ିଲା । ମୋ ଠୁଁ କରଛଡ଼ା ଦେଇ ଦୂରେଇ ଦୂରେଇ ରହିଲା । ରାତି ଦଶଟା ଏଗାରଟା ପର୍ଯ୍ୟନ୍ତ ଠାକୁରାଣୀ ଘରେ ସମୟ ବିତାଉଥିବା କୈବଲ୍ୟ ଆଉ ଠାକୁରାଣୀ ପିଣ୍ଡା ମାଡ଼ିଲା ନାହିଁ । ତା'ର ଅନୁପସ୍ଥିତିର ସୁଯୋଗ ନେଇ ଦିନେ ଗଦେଇ କହିଲା- କଇବଲିଆଟା ପ୍ରେମରେ ପଡ଼ିଯାଇଛି । ମୁଁ କୌତୂହଳ ଦମନ କରିନପାରି ପଚାରିଲି- କୋଉଠି ବେ ?

ପଞ୍ଚୁଆ'ନାର ସ୍ତ୍ରୀ କମଳୀ ଭାଉଜ । ଶଳା ଫସିଯାଇଛି ବୋଲି କହ । କମଳି ଭାଉଜ ତାକୁ କିମିଆ କରି ମେଣ୍ଢା ବନେଇ ଦେଇଛି । ପଞ୍ଚୁଆ'ନାଟା ତ ଶଳା ମାଇଚିଆଟା । ରାତି ଏଗାରଟା ପର୍ଯ୍ୟନ୍ତ ଭଜନ କୀର୍ତ୍ତନରେ ମାତି ମଠରେ ପଡ଼ି ରହିଥିବ । ଏପଟେ ସିଏ କଇବଲିଆକୁ କଳାଫୁଲ ଶୁଙ୍ଘେଇ ମେଣ୍ଢା କରି ରଖିଥିବ । ଗଦେଇ ତା' ମୁହଁଟାକୁ ମୋ କାନ ପାଖକୁ ବଢ଼େଇ ଚୁପ୍ ଚୁପ୍ କହିଲା- ଜାଣିଚୁ ? କମଳୀ ଭାଉଜଟା ଜଡ଼ିବୁଟୀ ଜାଣେ । ଗୁଣୀଟୁଣୀ କରି ମଣିଷକୁ ବଶ କରିବା ବିଦ୍ୟା ଜାଣେ । କେଡ଼େ କେଡ଼େ ଭେଣ୍ଡାଙ୍କୁ ସେ ମେଣ୍ଢା କରି ତାଙ୍କ ଦେହରୁ କୁଟା ଲଗେଇ ରକ୍ତ ଶୋଷିଚି । ଆମ କଇବଲିଆଟା ତା'ରି ପାଲରେ ପଡ଼ିଯାଇଛି । ତା' ବାପଘର ଗାଁରେ ପରା ହୁଲୁସ୍ଥୁଲୁ କରୁଥିଲା । କାହିଁ କାହିଁ ମରଦ ପୁଅଙ୍କ ଦେହରୁ ରକତ ଶୋଷି ତାଙ୍କୁ ଖୋଳ କରି ଫିଙ୍ଗି ଦେଉଥିଲା । ଦଶଖଣ୍ଡ ଗାଁରେ ତା'ର ଏ ଅପକୀର୍ତ୍ତି ଡିବିଡିବି ହୋଇ ବାଜୁଥିଲା । ସେଇଥି ପାଇଁ ପରା ତା' ବାପା ସେ ଅଞ୍ଚଳରେ ଝିଅଟାକୁ ବାହା ଦେଇ ନପାରି ନଈ ପାରକରି ଏଇଠି ଆଣି ଗୁଞ୍ଜିଦେଇଗଲା । ନହେଲେ କମଳୀ ଭାଉଜର ଯୋଉ ରୂପ ରଙ୍ଗ ଯୌବନ, ତା' ସାଙ୍ଗକୁ ସବୁବେଳେ ଖୁଁ ଖୁଁ କାଶୁଥିବା ଧଙ୍ଗ ପେଲା ପଞ୍ଚୁଆ' ନା ! ଫୁଃ... ।

କମଳୀ ଭାଉଜର ରୂପରଙ୍ଗ ବା କୀର୍ତ୍ତି କଳାପ ସମ୍ପର୍କରେ କିଛି ଶୁଣିବାର ରୁଚିତ ମୋର ଆଦୌ ନଥିଲା, କିନ୍ତୁ କୈବଲ୍ୟଟା ଯେ ମୋହ ବନ୍ଧନରେ ପଡ଼ିଯାଇଛି ସେ କଥା ଚିନ୍ତା କରି ସେଦିନ ମୋ ମନଟା ବହୁତ ଖରାପ ହୋଇଗଲା ।

ସତକୁ ସତ କୈବଲ୍ୟଟାକୁ ଦେଖିଲେ ସେମିତି ଲାଗୁଥିଲା । ଦିନ କେଇଟା ଭିତରେ ତା'ର ଫୁଲିଲା ଫୁଲିଲା ଗାଲଗୁଡ଼ାକ ଶୁଖି ଠାକରା ହୋଇଗଲା । ଆଖି କୋରଡ଼ରେ ପଶିଗଲା । ତମ୍ବା ରଙ୍ଗର ତା' ଦେହଟା ଧୀରେ ଧୀରେ କଳା ପଡ଼ିଆସିଲା । ତା'ର ଅଷ୍ଟାଙ୍ଗ ଶିର ଦୁହିଁ ହୋଇପଡ଼ିଲା ଭଳି ଲାଗୁଥିଲା । ତଥାପି

ତାକୁ ପଚାରିଲେ ସେ କିଛି କହୁନଥିଲା କି ରୋଗର ନିଦାନ ପାଇଁ ଚିନ୍ତିତ ଜଣା ପଡୁନଥିଲା । ଦେଖୁ ଦେଖୁ ତା' ସୁନା ପରି ଦେହଟା ଚୁନା ହୋଇ ଯାଉଥିଲା ।

ଘଟଣାଟା ଆଉ ଲୁଚି ରହିଲାନି । ମାଇପିମାନଙ୍କ ଗାଧୁଆ ତୁଠ ପାଖରୁ ଆରମ୍ଭ କରି ନିଶ ଦାଢି ଗଜୁରି ନଥିବା ଟୋକାଗୁଡ଼ାଙ୍କର ଆଡ୍ଡା ମାଧିଆ ଦୋକାନ ଛକ, ଆମମାନଙ୍କର ଖଟି ଠାକୁରାଣୀ ଘର ଓ ଗାଁର ମୁଖିଆ ଓ ଗୁରୁଜନମାନଙ୍କର ପେଣ୍ଠ ନିଶାପମଣ୍ଡପ ପର୍ଯ୍ୟନ୍ତ । ସବୁଠି ସେଇ ଗୋଟିଏ ଚର୍ଚ୍ଚା ପରିସ୍ଥିତିକୁ ସରଗରମ କରି ରଖିଥିଲା । ଚାରିଆଡ଼େ ରାଷ୍ଟ୍ର ହୋଇଗଲା । ପଞ୍ଚାନନ ପଣ୍ଡାର ସ୍ତ୍ରୀ କମଳୀ କଞ୍ଚା ଡାହାଣୀ । ତା' ଦୃଷ୍ଟି, ତା' ଦାଢ଼ରେ ଥରେ ଯିଏ ପଡ଼ିଛି ସେଠୁ ମୁକୁଳିବା କାଠିକର ପାଠ ।

ସତକୁ ସତ କୈବଲ୍ୟ ତା' ଦାଢ଼ରୁ ମୁକୁଳି ପାରୁନଥିଲା କି କମଳୀ ଭାଉଜ ତାକୁ ମୁକ୍ତି ଦେଉନଥିଲା କେଜାଣି ସେ କିନ୍ତୁ ଦିନକୁ ଦିନ ମେଣ୍ଢା ହିଁ ପାଲଟି ଯାଉଥିଲା । ସାଙ୍ଗସାଥୀ ସାହିଭାଇ ଏପରିକି ବାପାମାଆ ଭାଇ ଭଉଣୀଙ୍କ ଠାରୁ ବି ସେ ଦୂରେଇ ଯାଉଥିଲା । ବାହାରକୁ ସମ୍ପୂର୍ଣ୍ଣ ନିଃସଙ୍ଗ ଜଣାପଡୁଥିବା କୈବଲ୍ୟର ଅନ୍ତଶ୍ଚେତନାକୁ କମଳୀ ଭାଉଜ ସଦା ସର୍ବଦା ଆଚ୍ଛନ୍ନ କରି ରଖୁଥିଲା । କୌଣସି ଉଗ୍ର ପାନୀୟ ଦ୍ୱାରା ଆକ୍ରାନ୍ତ ବ୍ୟକ୍ତିଟିଏ ଭଳି ସେ ସଦା ସର୍ବଦା ନିଶାଗ୍ରସ୍ତ ହେବାଭଳି ବୋଧ ହେଉଥିଲା ।

ଏମିତି କେତେଦିନ ଚାଲିଥାନ୍ତା କେଜାଣି ହଠାତ୍ ଗୋଟିଏ ଶୀତୁଆ ରାତିର ନିଶୁତି ପ୍ରହରରେ କମଳୀ ଭାଉଜର କିଳିକିଳା ରଡ଼ିରେ ଗାଁର କଲିଜାଟା ଥରିଉଠିଲା ଯେମିତି । ଏକ ଅଭାବିତ ବିପଦର ଆଶଙ୍କା କରି କଞ୍ଚା ନିଦରୁ ଉଠି ଯିଏ ଯେମିତି ଯେଉଁ ଅବସ୍ଥାରେ ଥିଲେ ଧାଇଁଲେ । କମଳୀ ଭାଉଜ ଘରେ ଏକୁଟିଆ ଥିଲା । ପଞ୍ଚୁଆ'ନା ଯାଇଥିଲା କୋଉ ଦୂରଗାଁକୁ ଯଜମାନୀ କରି । ଏଇଠି ଗୋଟିଏ ପ୍ରସଙ୍ଗ କହି ରଖେ, ଦୀର୍ଘ ଦଶବର୍ଷ ହେବ ଏ ଗାଁକୁ କମଳି ଭାଉଜ ବୋହୂ ହୋଇ ଆସିଥିଲେ ବି ସେ ମାଆ ହୋଇ ପାରିନଥିଲା । ଘରେ ତେଣୁ ସେ ଥିଲା ସମ୍ପୂର୍ଣ୍ଣ ଏକା ।

ସେଦିନ ସେଇ ଶୀତୁଆ କାଳିଜହ୍ନିଆ ରାତିରେ କମଳୀ ଭାଉଜର ଉଗ୍ର ରୂପ ଦେଖି ଗାଁ ସାରା ଲୋକ ସ୍ତବ୍ଧ ହୋଇ ଯାଇଥିଲେ । ସେ ହାତରେ ଧରିଥିଲା ଗୋଟିଏ ଧାରୁଆ କଟୁରୀ । ତା' ମୁକୁଳା କେଶ ଲମ୍ବିଯାଇଥିଲା ଅଣ୍ଟା ପର୍ଯ୍ୟନ୍ତ । ଶାଢ଼ୀର ପଣତଟାକୁ ଜୋର କରି ଅଣ୍ଟାରେ ଗୁଡ଼େଇ ସେ ଦିଶୁଥିଲା ରକ୍ତମୁଖା । କାଳିସୀ ଲାଗିଲା ଭଳି ନାଚି ନାଚି ସେ କାହା ଉଦ୍ଦେଶ୍ୟରେ ବିକୃତ କଣ୍ଠରେ ଅଭିସମ୍ପାତ ବର୍ଷି ଯାଉଥିଲା– ବାଡ଼ିପଶା ! ଯୋଗିନୀଖିଆ, ପରଘରବୁଡ଼ା । ଦେଇଚି ଦେଇଚି ଦି'ଚୋଟ ଏଥିରେ । ପୁଅମନ ଘର ଧରିଥିବ । ତୋର କ'ଣ ମାଆ ଭଉଣୀ ନାହାଁନ୍ତି

କିରେ ଅଳପେଇସା ? ପରଝିଅ-ବୋହୂଙ୍କ ଇଜ୍ଜତ୍ ନେବୁ ? କି ନ୍ୟାୟ ନିଶାପ ଅଛି ଏ ଗାଁରେ ? ଝିଅ-ବୋହୁଙ୍କୁ ବାସଠାବ ନାହିଁ ଏଠି ।''

ତା' ହାତରେ ଧରିଥିବା କଟୁରୀ ରକ୍ତ ଜୁଡୁବୁଡୁ । ସେ କାହାକୁ ଚୋଟ ଦେଲା କିଏ ତା'ର ଇଜ୍ଜତ ନେଉଥିଲା, ସେ କଥାର ବିନ୍ଦୁ ବିସର୍ଗ ସେଇ ରାତିରେ ଜଣା ପଡ଼ିଲା ନାହିଁ । ସେ ନିଜେ ବି କାହାରି ନାଁ ଉଚ୍ଚାରଣ କଲାନାହିଁ । କିନ୍ତୁ ସକାଳକୁ କଥାଟା ଅଛପା ହେଇ ରହି ନଥିଲା । କୈବଲ୍ୟର ପିଠିରେ ଦୁଇ ଇଞ୍ଚ ବହଳର ଗଭୀର କ୍ଷତ । ସେ କ୍ଷତ ଶୁଖିବାକୁ ପ୍ରାୟ ଦୁଇମାସ ଲାଗିଗଲା । ସେ କ୍ଷତ ଶୁଖିବା ସଙ୍ଗେ ସଙ୍ଗେ କୈବଲ୍ୟ ପାଲଟି ଯାଇଥିଲା ଗୋଟିଏ ଭିନ୍ନ ମଣିଷ । ଦୁଇ ମାସର ଅନ୍ତର୍ଦାହ ବୋଧହୁଏ କମଳୀ ଭାଉଜ ସହ ସବୁ ସମ୍ପର୍କ ନିଃଶେଷ କରିଦେବା ପାଇଁ, ତା' ସ୍ମୃତିକୁ ଜାଳି ପୋଡ଼ି ଧ୍ୱଂସ କରିଦେବା ପାଇଁ କେବିଲ୍ୟ ପକ୍ଷରେ ଯଥେଷ୍ଟ ଥିଲା । ସେ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଥିଲା । ସେ ପୁଣି ଆଗ ଭଳି ହସୁଥିଲା, ଆମ ସାଙ୍ଗରେ ବସୁଥିଲା, ଗପୁଥିଲା, ଠାକୁରାଣୀ ଘରେ ରାତି ଏଗାରଟା ପର୍ଯ୍ୟନ୍ତ ସମୟ ଅତିବାହିତ କରୁଥିଲା । ତା' ଶରୀର ଓ ମନ ଉପର ଦେଇ ବହି ଯାଇଥିବା ସକଳ ଘଟଣ ଓ ଅଘଟଣକୁ ସେ ଦୁଃସ୍ୱପ୍ନ ବୋଲି ଧରି ନେଇଥିଲା ।

କମଳୀ ଭାଉଜର ସ୍ମୃତିକୁ ସେ ସିନା ମନ ଦର୍ପଣରୁ ପୋଛି ପକେଇଥିଲା, ତା' ପିଠିର ଗଭୀର କ୍ଷତଚିହ୍ନଟା କିନ୍ତୁ ତାକୁ ସାରା ଜୀବନ ପାଇଁ କଳଙ୍କର ଟୀକାଟିଏ ପିନ୍ଧେଇ ଦେଇଥିଲା ।

ସେ କ୍ଷତ ଚିହ୍ନଟା କମଳୀ ଭାଉଜର ସତୀତ୍ୱ ଓ କୈବଲ୍ୟର ଲମ୍ପଟତ୍ୱ ଜାହିର କରୁଥିଲା କି କମଳୀ ଭାଉଜର ନିନ୍ଦା ଅପବାଦରୁ ଆତ୍ମରକ୍ଷା ପାଇଁ ସୁଚିନ୍ତିତ ଅଭିନୟ କିମ୍ବା କୈବଲ୍ୟର ମୋହ ମୁକ୍ତି ପାଇଁ କମଳୀ ଭାଉଜର ରଣ କୌଶଳ ଥିଲା ତାହା ରହସ୍ୟ ହୋଇ ରହିଗଲା । କେବିଲ୍ୟ ପିଠିର କ୍ଷତ ଚିହ୍ନଟା କେବଳ ଆମ ବୟସର ଯୁବକମାନଙ୍କ ପାଇଁ ନୁହେଁ, ସାରା ଗାଁଟାର ସକଳ ବର୍ଗର ଲୋକଙ୍କ ପାଇଁ ଏକ ରୋଚକ ଚର୍ଚ୍ଚା ଓ ରହସ୍ୟମୟ କିମ୍ବଦନ୍ତୀ ହୋଇ ରହିଗଲା ବହୁଦିନ ପର୍ଯ୍ୟନ୍ତ ।

ଏ ଭିତରେ ଅନେକ ଦିନ ବିତିଗଲାଣି । ସରକାରୀ କାର୍ଯ୍ୟରେ ଦୀର୍ଘଦିନ ଧରି ମୁଁ ଗାଁ ଠାରୁ ବିଛିନ୍ନ ହୋଇ ପଡ଼ିଥିଲି । ଯଦିଓ ଭାବଗତ ସ୍ତରରେ ନୁହେଁ । ସରକାରୀ କାର୍ଯ୍ୟରୁ ଅବ୍ୟାହିତ ନେବାପରେ ମୁଁ ପ୍ରଥମ କରି ଏଇ ଆସିଥିଲି ଗାଁକୁ । ପଞ୍ଚାନନ ପଣ୍ଡା ପୁଅ ରୂପରେ କୈବଲ୍ୟର ପ୍ରତି ରୂପ ଦେଖି ମୁଁ ତାକୁ କୈବଲ୍ୟ କିମ୍ବା କୈବଲ୍ୟର ପୁଅ ବୋଲି ଭ୍ରମ କରିବା ତ ସ୍ୱାଭାବିକ ଥିଲା, କିନ୍ତୁ ମୋର ମସ୍ତକ

ଅବନତ ହୋଇଗଲା ମଣିଷର ପ୍ରତ୍ୟେକ କାର୍ଯ୍ୟକାରଣର ଭ୍ରମଶୂନ୍ୟ ହିସାବ ରଖୁଥିବା ଓ ସକଳ ଭ୍ରମ ବିଭ୍ରମର ଉର୍ଦ୍ଧ୍ୱରେ ଥିବା ସେଇ ଅଦୃଶ୍ୟ ଶକ୍ତି ଉଦ୍ଦେଶ୍ୟରେ ।

କମଳୀ ଭାଉଜର ପ୍ରେମ ଓ ପ୍ରତାରଣାର କଳଙ୍କିତ କ୍ଷତଚିହ୍ନ ବହନ କରି କୈବଲ୍ୟ ଗୋଟିଏ ପୁରୁଷ ପାଇଁ ଅତିଷ୍ଠ ହୋଇ ପଡୁଥିଲା ସିନା ନିୟତି କମଳୀ ଭାଉଜ ପାଇଁ ଯେଉଁ ଶାସ୍ତିବିଧାନ କଲା, ଯେଉଁ ଗଭୀର କଳଙ୍କର କ୍ଷତ ଚିହ୍ନଟିଏ ଖଞ୍ଜିଦେଲା ସାତ ପୁରୁଷ ଧରି ସେଥିରୁ ମୁକୁଳିବା ପାଇଁ ତା' ପକ୍ଷରେ ଅସମ୍ଭବ ଥିଲା ।

ମୁଁ ଅନ୍ୟମନସ୍କ ହୋଇପଡ଼ିଥିଲି ।

କୈବଲ୍ୟ ଓରଫ ପଞ୍ଚାନନ ପଣ୍ଡାର ପୁଅ ସୁଦର୍ଶନ ପୁଣି ଥରେ ମତେ ମନେ ପକେଇ ଦେଲା ।

ବାବୁ ! କ'ଣ ଏତେ ଭାବୁଛନ୍ତି ? କୁଆଡ଼େ ଯିବେ ? ମୁଁ କହିଲି- ତୋରି ଗାଁକୁ ଗାଡ଼ିଚଲା । ସୁଦର୍ଶନ ଅଟୋଷ୍ଟାର୍ଟ କଲା । ମୁଁ ସୁଟ୍‌କେଶ୍‌ଟା ଧରି ନଇଁ ପଡ଼ି ଅଟୋ ଭିତରକୁ ପଶିଗଲି ।



## ବାଙ୍କେ ଝିଅ

ମାଉସୀ, ପିଉସୀ, ଖୁଡ଼ୀ, ଆଈ, ଜେଜୀମା, ଅପା ଯାହା ପାଖରେ ସେ ବସୁଥିଲା, ଏକ ରକମ ଅଜାଡ଼ି ହେଇ ବସୁଥିଲା । କେହି କେହି ସହୃଦୟା ମହିଳା ତାର ଏ ଅଭ୍ୟାସକୁ ଗୁରୁତ୍ୱ ଦେଉ ନଥିଲା ବେଳେ ଆଉ କେହି କେହି ତାକୁ ଠେଲି ଦେଇ କହୁଥିଲେ, କେଡ଼େ ବାଙ୍କେ ଝିଅଟା ମ' ! ସିଧାହେଇ ବସି ପାରୁନୁ..?

ସେ ମୁହଁ ଶୁଖେଇ ଦେଉଥିଲା, ତା' ଆଖି ଛଳ ଛଳ ହେଇଯାଉଥିଲା ।

ତାକୁ ବର୍ଷେ ନ ପୁରୁଣୁ ସାନଭାଇ ବିଟୁର ଜନ୍ମ । କ୍ରମାଗତ ତିନୋଟି କନ୍ୟାସନ୍ତାନ ପରେ ପୁତ୍ର ସନ୍ତାନର ଶୁଭ ଆଗମନୀ ପରିବାରରେ ତାର ଅସ୍ତିତ୍ୱକୁ ଅବହେଳିତ କରିଦେଇଥିଲା । ସମସ୍ତେ ତାକୁ ପାଶୋରି ପକେଇଥିଲେ । ବୋଉର ସବୁତକ ମମତାର ଧାରା ଅଜାଡ଼ି ହୋଇପଡ଼ିଥିଲା ବିଟୁ ଉପରେ । ସେ କେବଳ ବୋଉ ଦେହକୁ ଆଉଜି

ଠିଆ ହୋଇ ଲୋଭିଲା ଆଖିରେ ବିଟୁର ନାଲି ଗୁଲୁଗୁଲୁ ଓଠ, ଜୁଳୁଜୁଳୁ ଅନେଇଥିବା ଦୁଇ ଆଖି, କଅଁଳ କଅଁଳ ହାତ ପାପୁଲି, ଛେନା ଭଳି ନରମ ଲୁତୁପୁତୁ ଦେହକୁ ଦେଖୁଥିଲା, ଯିଏ ହଠାତ୍ ଆସି ବୋଉ କୋଳର ଉଷ୍ଣତା ତା'ଠାରୁ ଛଡ଼େଇ ନେଇଥିଲା । ସେଇ ଉଷ୍ଣତା ସେ ଖୋଜି ହେଉଥିଲା ମାଉସୀ, ଖୁଡ଼ୀ, ଆଈ ଓ ଅପାମାନଙ୍କ ଭିତରେ ।

ତାର ପାଠ ପଢ଼ା ବୟସ ହେଲା । ସେ ସ୍କୁଲ ଗଲା, ନୁଖୁରା ଝୁରୁଝୁରୁ ମୁଣ୍ଡବାଳ । ପଛ ବୋତାମ ଛିଣ୍ଡିଯାଇଥିବା ଦରମଇଲା ଫ୍ରକ୍‌ରେ ଅଧାମେଲା ପିଠି ସାଙ୍ଗକୁ ଫ୍ରକ୍‌ର କଲରଟାକୁ ସବୁବେଳେ ପାଟିରେ ଖୁଣ୍ଟୁଥିବା ଦେଖି ଦିଦି ବିରକ୍ତ ହେଇ କହୁଥିଲେ- କେଡ଼େ ବାଜେ ଝିଅଟା ମ ! ଫ୍ରକ୍‌ଟା କାହିଁକି ସବୁବେଳେ ଚୋବୋଉଛୁ ? ମାଆକୁ କହୁନୁ ପଛପଟ ବୋତାମଟା ଲଗେଇଦେବେ ! କାଲିକୁ ଫ୍ରକ୍ ସଫା କରିଆସିବୁ ।' ସେ ମୁଣ୍ଡ ଟୁଙ୍ଗାରୁ ଥିଲା ।

ଘରକୁ ଆସିଲେ ସେ ସବୁ ଭୁଲି ଯାଉଥିଲା । ବହି ବସ୍ତାନି ତା' ଜାଗାରେ ରଖିଦେଇ କ'ଣ ଟିକେ ପାଟିରେ ଗୁଞ୍ଜିଦେଇ ସେ ଦାଣ୍ଡକୁ ଦୌଡ଼ି ପଳାଉଥିଲା । ତା' କଥା ବୁଝିବାକୁ, ତା' ସାଙ୍ଗରେ କଥା ହେବାପାଇଁ କାହାର ତର ନଥିଲା । ବିଟୁର ହସକାନ୍ଦ, ଖେଳକୁଦ, ଖିଆପିଆକୁ ନେଇ ସମସ୍ତେ ବ୍ୟସ୍ତ ରହୁଥିଲେ । ସେ ସିଧା ହାଜର ହେଇଯାଉଥିଲା ସାବୀଖୁଡ଼ି ପାଖରେ । ସାବୀଖୁଡ଼ୀ ଏକୁଟିଆ ମଣିଷ । ପିଲାପିଚିକା ନାହାଁନ୍ତି । ସ୍ୱାମୀ କଲିକତାରେ ଚଟକଳରେ କାମ କରୁଥିଲା, ଆସୁଥିଲା ବର୍ଷେ ଛ' ମାସରେ ଥରେ । ସାବୀଖୁଡ଼ି ପାଇଁ ସେ ଦୋକାନରୁ ସଉଦା ଆଣୁଥିଲା । ତା' ସାଙ୍ଗରେ ମିଶି ସଜନାଶାଗ ବାଛୁଥିଲା । ଭୂଷ ଚିଙ୍ଗୁଡ଼ିର ନିଶ, ଗୋଡ଼, ଛିଣ୍ଡାଉଥିଲା । ତା' ମୁଣ୍ଡରୁ ପାଚିଲା ବାଳ ଉପାଡ଼ି ଦେଉଥିଲା, ଉକୁଣି ବାଛୁଥିଲା । କଲିକତାରୁ ଆସିଥିବା ଖଜୁରୀ କୋଳି, ଆମ୍ବ ଆଚାର ନହେଲେ ଆମ୍ବୁଲ ଖଣ୍ଡେ ସାବୀଖୁଡ଼ୀ ତା' ହାତରେ ଧରେଇ ଦେଉଥିଲା । ମହମହ ବାସୁଥିବା କଲିକତି ବାସନା ତେଲ ମାଖି ତା' ମୁଣ୍ଡ କୁଣ୍ଡେଇ ନାଲି ରିବନ ଖଣ୍ଡେ ବାନ୍ଧି ଦେଉଥିଲା । ମୁହଁରେ କାଶ୍ମିରୀ ସ୍ନୋରୁ ମେଞ୍ଚାଏ ଲଗେଇ ଦେଇ ତା ଉପରେ ପାଉଡର ଥାପି ଦେଉଥିଲା । ଆଖିରେ ଲଗେଇ ଦେଉଥିଲା କଜ୍ଜଳ । କେବେକେବେ ପାଦରେ ଅଳତା ବି । ଛୁଟିଦିନ ଦ୍ୱିପହରଟା ସାବୀଖୁଡ଼ୀ ତାକୁ କୋଳରେ ପୂରେଇ ଶୋଉଥିଲା । ତାକୁ ଏସବୁ ବହୁତ ଭଲ ଲାଗୁଥିଲା ।

ଜେଜୀମାର ଡାକ ଶୁଭୁଥିଲା, ଚମ୍ପି, ଚମ୍ପିଲୋ, ଆଲୋ ଚମ୍ପା ! କେଡ଼େ ବାଜେ ଟୋକୀଟା ଲୋ ! ଚବିଶ ଘଣ୍ଟା ଉଦାଖାଇ ବୁଲୁଚୁ !

ମୁଁ ଯାଉଚି ଲୋ ଖୁଡ଼ୀ ! ଜେଜୀମା ଚିଲ୍ଲେଇଲାଣି । ସେ ଡିଆଁଟିଏ ମାରି ଘରେ ହାଜର ହେଇଯାଉଥିଲା । ସେତେବେଳକୁ ଅଗଣାରେ ବଢ଼ାହେଇଥିବା ଭାତଖାଲି ପାଖରେ ବସି ବାପା ଜେଜୀମା ଓ ଅପାମାନେ ଖାଇବା ଆରମ୍ଭ କରି ଦେଇଥା'ନ୍ତି । ବୋଉ ବିଚୁ ଥାଳି ପାଖରେ ନଇଁପଡ଼ି ମାଛଖଣ୍ଡରୁ କଣ୍ଟା ବାଛି ଦେଉଥାଏ ତ କେତେବେଳେ ଡାଲିଗିନାରୁ ଡାଲିତକ ଭାତ ଥାଳିରେ ଅଜାଡ଼ି ଗୁଣ୍ଡା ବଳି ଦେଉଥାଏ, କେତେବେଳେ ଘଷି ଓ କୁଣ୍ଡାର କୁହୁଳା ଉପରୁ ଦୁଧ ଠେକିଟା ଉଠେଇଆଣି ଗରମ ଗରମ ଦୁଧ ଓ ସରତକ ତା' ଭାତ ଉପରେ ଢାଳିଦେଇ ବିଞ୍ଚଣା ଖଣ୍ଡେ ଧରି ବିଞ୍ଚି ଦେଉଥାଏ । ବାପାଙ୍କ ଗମ୍ଭୀର ମୁହଁଆଡ଼େ ଟିକେ କଣେଇ ଚାହିଁଦେଇ କଡ଼େଇ କଡ଼େଇ ଯାଇ ସେ ଅପମାନଙ୍କ ପାଖରେ ବସିପଡୁଥିଲା । ବାପା ପାଟି କରୁଥିଲେ, ହାତ ଧୋଇଛୁ ? ସେ ଉଠିଯାଉଥିଲା ହାତ ଧୋଇବାକୁ ।

ସେ ହାଇସ୍କୁଲ ଗଲା । ଘରେ ରୀତିମତ ପାଠବହି ସଙ୍ଗେ କସରତ କରୁ ନଥିଲେ ବି ସ୍କୁଲରେ ଶିକ୍ଷକ-ଶିକ୍ଷୟିତ୍ରୀଙ୍କର ସେ ପ୍ରିୟ ଛାତ୍ରୀ ଥିଲା । ସେମାନେ ଯାହା ପଢ଼ାଉଥିଲେ ସେ ମନଦେଇ ଶୁଣୁଥିଲା । ତାର ସ୍ମରଣ ଶକ୍ତି ଥିଲା ପ୍ରଖର । କ୍ଲାସ୍‌ରେ ଅନ୍ୟ ପିଲାମାନେ ପାଠରେ ତା' ସଙ୍ଗେ ଟକ୍କର ଦେଇ ହାରିଯାଉଥିଲେ । ଶିକ୍ଷକଙ୍କ ପ୍ରଶ୍ନର ସଠିକ୍ ଉତ୍ତର ଦେଇ ସେ ନିର୍ଭୟରେ ସେମାନଙ୍କ କାନମୋଡ଼ି ଦେଉଥିଲା । ନୂଆକରି ନିଶଦାଢ଼ି ଗଜୁରୁଥିବା ଟୋକାମାନଙ୍କ ପାଟିରୁ ତେଢ଼ା ମେଢ଼ା କଥା ଖସିଗଲେ ସେ ଫେଁ ଫେଁ ହସି ଜବାବ ଦେଉଥିଲା । ସେମାନେ ତା' ପଛରେ କୁହାକୁହି ହେଉଥିଲେ କେଡ଼େ ବାଜେ ଝିଅଟା ମ' ! ପାଠ ଟିକେ ହେଉଚି ବୋଲି ସିଏ ଆଉ ମଣିଷ ମାନୁନି ।

ଅନ୍ୟମାନଙ୍କ ତୁଳନାରେ ସେ ଭଲ ନମ୍ବର ରଖି ମେଟ୍ରିକ୍‌ପାସ୍ କଲା । ତା'ଠାରୁ ଖରାପ ନମ୍ବର ରଖିଥିବା ପିଲାମାନେ କଲେଜରେ ପଢ଼ିବାପାଇଁ ସହରକୁ ଗଲେ । ସେ ପଢ଼ିଲା ଗାଁ କଲେଜରେ ।

ସାବୀଖୁଡ଼ୀର ଦୂର ସଂପର୍କୀୟ ପୁତୁରା ସୁଶୋଭନ ତା' ଉପର କ୍ଲାସ୍‌ରେ ପଢୁଥିଲା । ସାଇକେଲ ଧରି ସେ ନିତି କଲେଜ ଆସୁଥିଲା । ପୁଣି ଫେରି ଯାଉଥିଲା । ଓଷାବାର ପୁନେଇ ପର୍ବରେ ସାବୀଖୁଡ଼ୀ ଚମ୍ପା ହାତରେ ସୁଶୋଭନ ପାଖକୁ ଖବର ଦେଉଥିଲା । ଘରଆଡ଼େ ଟିକେ ମୁହଁ ମାରି ଦେଇଯିବା ପାଇଁ ।

ଚମ୍ପା କହେ- ସୁଶୋଭନ ଭାଇ ! ସାବୀଖୁଡ଼ୀ ଖବର ଦେଇଛି, ଘରଆଡ଼େ ଯିବ ।

ଅପରାଜିତାର ପାଖୁଡ଼ା ଭଳି ତାର ଦୁଇ ସୁନ୍ଦର ନୀଳ ଆଖି ଆଡ଼େ ଚାହିଁ କେମିତି ଗୋଟେ ଆତୁରିଆ ସ୍ୱରରେ ସୁଶୋଭନ କହେ-

''ଖୁଡ଼ୀ ଡାକିଛି ନା' ତୁ ଡାକୁଚୁ ?

ସେ ବିରକ୍ତ ହୋଇ କହେ । ବାଃ ମୁଁ କାହିଁକି ଡାକିବି ମ । ସାବୀଖୁଡ଼ୀ କହିବାରୁ ମୁଁ ତମକୁ କହିଲି । ତମ ଇଚ୍ଛା ହେଲେ ଯାଅ ! ନହେଲେ ନାହିଁ । ସେ ବୁଲିପଡ଼ି ତା ରାସ୍ତା ଧରେ । ସୁଶୋଭନ ଅନ୍ୟମନସ୍କ ହେଇ ତାକୁ ଚାହିଁ ରହେ ସେ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ।

ସେବର୍ଷ ଚମ୍ପାର କଲେଜରେ ତୃତୀୟ ବର୍ଷ । ସାବୀଖୁଡ଼ୀ ଶକ୍ତ ବେମାର ପଡ଼ିଲା, ଖାଇଲା ନାହିଁ କି ପିଇଲା ନାହିଁ । ଦିନ କେଇଟାରେ କତରାଲଗା ହେଲା । ସୁଶୋଭନ ସହରରୁ ଡାକ୍ତର ଧରିଆସିଲା । ଖୁଡ଼ୀ ପାଇଁ ପଥ୍ୟ ଔଷଧ ଆଣିଲା । ସାଲାଇନ୍ ଚାଲିଲା । ରାତିସାରା ଜଗି ରହିବାକୁ ହବ ଖୁଡ଼ୀକୁ ।

ଖୁଡ଼ୀ କହିଲା, ଆଲୋ ଚମ୍ପା ! ସୁଶୋଭନ ପାଇଁ ଗଣ୍ଡେ ଫୁଟେଇ ଦେଇଯା । ମୋର ଆଉ ବଳ ବୟସ ଅଛି ଯେ, ମୁଁ ତା ପାଇଁ କ'ଣ କରିବି ? ଚମ୍ପା ସୁଶୋଭନ ପାଇଁ ଭାତ, ଡାଲି, ଆଳୁଭର୍ତ୍ତା କଲା, ଥାଳି ପାଖରେ ଆଚାର ଟିକେ ବାଢ଼ିଦେଲା ।

ଚମ୍ପା, ସୁଶୋଭନ ଦୁହେଁ ଲାଗିପଡ଼ିଲେ ସାବୀଖୁଡ଼ିକୁ ଆରୋଗ୍ୟ କରିବାପାଇଁ । ଖୁଡ଼ୀ ସୁସ୍ଥ ହୋଇଉଠିଲା । ଅସୁସ୍ଥ ହେଲା ଚମ୍ପା । ଦିନକୁ ଦିନ ସେ କଣ୍ଟା ହେଇଗଲା । ଖାଇବାକୁ ରୁଚିଲାନି । ମୁଣ୍ଡ ବୁଲେଇ ଦେଲା, ଖାଲି ବାନ୍ତି ବାନ୍ତି ଲାଗିଲା ।

ସୁଶୋଭନକୁ ସେସବୁ କଥା ଖୋଲି କହିଲା । ଯାହା ହେବା କଥା ନଥିଲା, ସେୟା ହେଲା । ଏବେ କ'ଣ କରିବା ? ସୁଶୋଭନ ଟିକେ ଚିନ୍ତିତ ହେବା ପରି ଲାଗିଲା । ତଥାପି ଯଥା ସମ୍ଭବ ନିଜ ଭାବ ଗୋପନ କରି ସେ କହିଲା-

ଚାକିରି ପାଇଁ ମୁଁ ଦୁଇ ତିନିଟା ଜାଗାକୁ ଦରଖାସ୍ତ କରିଛି, ମିଳିଯାଇ ପାରେ । ଏବେ ଯଦି ହଠାତ୍ ଆମେ କିଛି କରି ବସିବା, ବଞ୍ଚିବା କେମିତି ? ମୋ ହାତରେ ତ ଫଟା ପାହୁଲାଟିଏ ନାହିଁ । ଚମ୍ପା ବେକରେ ପକେଇଥିବା ବିଛାମାଳିଆ ଚେନ୍‌ଟା ଆଡ଼େ ଚାହିଁ ସେ କହିଲା, ଅନ୍ତତଃ ଛୋଟକାଟିଆ ବିଜିନେସଟିଏ କରିବାକୁ ତ ପାଞ୍ଚଦଶ ହଜାର ଟଙ୍କା ଦରକାର । ଘରଭଡ଼ାଟିଏ ତ ନେବାକୁ ହେବ ।

ସେ ବିଚଳିତ ହୋଇପଡ଼ିଲା । ଅସହାୟ କଣ୍ଠରେ କହିଲା, ସୁଶୋଭନ ଭାଇ– ତମେ ଯାହା କରୁଛ ଶୀଘ୍ର କର, ଘରେ ଜାଣିଲେ ମୋର ଆଉ ରକ୍ଷା ନାହିଁ । କାହାରି ଆଗରେ ମୁଁ ମୁହଁ ଦେଖେଇ ପାରିବି ନାହିଁ । ସତ କହୁଚି ବିଷ ପିଇ ଦେବି ।

ବେକରୁ ବିଛାମାଳିଆ ଚେନ୍‌ଟି ବାହାର କରି ସୁଶୋଭନ ଆଡ଼କୁ ବଢ଼େଇ କହିଲା, ଏଇଟା ନିଅ, ଘରଟିଏ ଭଡ଼ା ନେବ । ବଳକା ବଞ୍ଚିବା ପାଇଁ ଅବଲମ୍ବନଟିଏ କରିବ ।

ସୁଶୋଭନ ଥତମତ ହେଉଥିଲା । ଚମ୍ପା ଜବରଦସ୍ତ ବାଁ ହାତରେ ସୁଶୋଭନର ଡାହାଣ ହାତଟା ଟାଣିଆଣି ଲୁହ ଡବଡବ ଅଖିରେ ଥରିଲା କଣ୍ଠରେ କହିଲା– ଆଉ ଉପାୟ ନାହିଁ ସୁଶୋଭନ ଭାଇ । ତମେ ଧର ଏଇଟାକୁ ।

ଘର ଲୋକଙ୍କ ଆଗରେ ଖାଲି ବେକଟାକୁ ଓଢ଼ଣୀ ଗୁଡ଼େଇ ରଖିଲା ଚମ୍ପା ।

ସୁଶୋଭନ ଆଠଦିନ ପରେ ଆସିଲା । କଲେଜ କ୍ୟାମ୍ପସ୍‌ର କୃଷ୍ଣଚୂଡ଼ା ଗଛମୂଳେ ଚମ୍ପାକୁ ଭେଟିଲା । ଚମ୍ପା ଆଖିରେ ବ୍ୟସ୍ତତା । –କ'ଣ ବ୍ୟବସ୍ଥା କଲ ସୁଶୋଭନ ଭାଇ ? ଏ ଆଠଦିନ ଯେ ମୋର କେତେ ଆଶଙ୍କା ଉଦ୍‌ବେଗରେ କଟିଛି !

ସୁଶୋଭନ ମୁହଁ ଉପରକୁ ଝୁଙ୍କି ପଡ଼ିଥିବା କେରାଏ ଅଳରାବାଳକୁ ପଛ ଆଡ଼କୁ ଛାଟିଦେଇ ତଳକୁ ମୁହଁ ପୋତି କହିଲା ।

ଯାହା ଦେଇଥିଲୁ, ସମୁଦ୍ରକୁ ଶଙ୍ଖେ । ଆଉ କିଛିଦିନ ଅପେକ୍ଷା କର । ମୁଁ କିଛି ଗୋଟିଏ ବ୍ୟବସ୍ଥା କରେ । ତାପରେ ଦୁହେଁ ଚାଲିଯିବା ।

ବିସ୍ଫୋରଣ କଲାପରି ସେ କହିଲା, ତମ ମୁଣ୍ଡ ଠିକ୍ ଅଛି ତ ! ଆହୁରି ଅପେକ୍ଷା କରିବାକୁ କହୁଚ ?

ତା' ପରଦିନ ଚମ୍ପା ରାତି ଚାରିଟାରୁ ଆଲମିରା ଖୋଲି ପାଞ୍ଚ ହଜାର ଟଙ୍କା ଓ ତିନି ଭଉଣୀଙ୍କ ପାଇଁ ସଦ୍ୟ ଗଢ଼ା ହେଇଥିବା ଛଅପଟ ସୁନା କଙ୍କଣ ହାତ ବ୍ୟାଗ୍‌ରେ ପକାଇଲା । ସୁଟ୍‌କେଶ୍‌ଟିରେ ଆବଶ୍ୟକୀୟ ଡ୍ରେସ୍ କିଛି ଧରି ସେଇ କୃଷ୍ଣଚୂଡ଼ା ଗଛ ମୂଳକୁ ଗଲା । ସୁଶୋଭନ ଆଗରୁ ସ୍କୁଟରଟିଏ ଧରି ଅପେକ୍ଷା କରିଥିଲା । ସେଇ ଜାଙ୍ଗୁଲୁ ଜାଙ୍ଗୁଲୁ ଅନ୍ଧାରରେ ଦୁହେଁ ସହର ମୁହାଁ ହେଲେ । ଘରଟିଏ ନେଇଥିଲା ସୁଶୋଭନ, ତା ସହ କିଛି ଆସବାବ ପତ୍ର ବି । ଏଇ ଯେମିତି ସପ ଖଣ୍ଡେ ଷ୍ଟୋଭ୍‌ଟିଏ ଡେକ୍‌ଚି କଡ଼େଇ, ଥାଳି ଦୁଇଟା ଗ୍ଲାସ ଗିନା ଇତ୍ୟାଦି ।

ସ୍ନେହ ଶ୍ରଦ୍ଧା ଓ ନିଜର ଅସ୍ତିତ୍ୱ ଅଧିକାର ପାଇଁ ଝୁରି ହେଉଥିବା ଚମ୍ପାକୁ ଏଇ ଟୁଙ୍ଗୀ ଘରଟା ଅଷ୍ଟଐଶ୍ୱର୍ଯ୍ୟପୂର୍ଣ୍ଣ ରାଜଉଆସ ଭଳି ମନେ ହେଲା । ଏ ଘରଟା

ଯେ ତାର, ସଂପୂର୍ଣ୍ଣ ତାର, ହେଉ ପଛେ ଭଡ଼ା ଘର । ଏଇଠି ସେ ତାର ଘରକରଣା ଆରମ୍ଭ କରିବ । ତା ଜରାୟୁରେ ବଢୁଥିବା ପ୍ରାଣପିଣ୍ଡଟା ଏଇଠି ତାର ସତ୍ତା ଜାହିର କରିବ । ତା ନାରୀତ୍ୱକୁ ସ୍ୱୀକୃତି ଦେବ । ତା ମାତୃତ୍ୱକୁ ମହିମାମଣ୍ଡିତ କରିବ । ଖୁସିରେ ସେ ଅଧୀର ହୋଇପଡ଼ିଲା । ସୁଶୋଭନର ବେକରେ ଓହଳି ପଡ଼ି ପ୍ରଥମ ଥର ପାଇଁ ହୃଦୟ ଖୋଲି ତାର ଗାଲ, କପାଳ, ଓଠ ଓ ବେକରେ ଚୁମ୍ବନ ପରେ ଚୁମ୍ବନ ବିଛେଇ ଦେଇଗଲା । ସୁଶୋଭନ କୁଣ୍ଠିତ ହସଟିଏ ହସି ଚମ୍ପାର ଏ ଦୌରାତ୍ମ୍ୟ ସହ୍ୟ କରିନେଲା ।

ସେଦିନ ରାତିଟା ନିବିଡ଼ ଭାବରେ ସେମାନେ ପରସ୍ପରକୁ ଅନୁଭବ କଲେ । ଏମିତି ମୁକ୍ତ ସ୍ୱାଧୀନ ଓ ନିର୍ଭୟ ଭାବରେ ଦୁହେଁ ଦୁହିଁଙ୍କୁ ପାଇ ନଥିଲେ କେବେ । ଚମ୍ପାର ଏ ଯେମିତି ନବଜନ୍ମ । ରାତିସାରା ଦୁହେଁ ଶୋଇ ନାହାଁନ୍ତି କହିଲେ ଚଳେ । ପାହାନ୍ତା ପହରକୁ ତାର ଆଖି ଟିକେ ଲାଗିଯାଇଥିଲା । ଝରକା ଦେଇ ସୂର୍ଯ୍ୟକିରଣ ମୁହଁ ଉପରେ ପଡ଼ିବାରୁ ତା ନିଦ ଭାଙ୍ଗିଗଲା । ମୁହଁ ବୁଲେଇ ଦେଖିଲା ସୁଶୋଭନ ଉଠିଗଲାଣି ।

ଲାଜକୁଳୀ ଲତାଟିଏ ଭଳି ସେ ସାଙ୍କୁଡ଼ି ଗଲା । ଧଡ଼ପଡ଼ ହୋଇ ଉଠିପଡ଼ିଲା । ସୁଶୋଭନ ବୋଧହୁଏ ବାଥରୁମ ଯାଇଛି, ସେ ଅପେକ୍ଷା କଲା । ବାଥରୁମରୁ ସୋର୍ ଶବ୍ଦ ନାହିଁ । ଝରକା ଦେଇ ଅଗଣାକୁ ଚାହିଁଲା । ଅଗଣାରେ ନାହିଁ । ବଜାରକୁ ଟିଫିନ୍ ଆଣିବାକୁ ଗଲା କି ? କୃତଜ୍ଞତାରେ ତା' ମନଟା ବେଲୁନ୍ ପରି ପୁରି ଉଠିଲା । କେତେ ବ୍ୟସ୍ତ ସୁଶୋଭନ ତା ପାଇଁ ? ମନେମନେ ଚିନ୍ତାକଲା ଜୀବନରେ ଯେତେ ସଂଘର୍ଷ ସଂଘାତ ଆସୁ ପଛେ, ସେ ଆଦୌ ଛାଡ଼ିବନି ସୁଶୋଭନର ହାତ ।

ଭ୍ୟାନ୍‌ଟି ଭିତରୁ ବ୍ରଶ୍ ପେଷ୍ଟ ବାହାର କଲା । ଏଁ ଚୁଡ଼ିଗୁଡ଼ାକ କୁଆଡ଼େ ଗଲା ? ଏଇଠି ତ ଥିଲା । ଏପଟ ସେପଟ ତଳ ଉପର କରି ଖୋଜିଲା । ନା-ନାଇଁତ । ସୁଶୋଭନର ସୁଟ୍‌କେଶ ଘାଣ୍ଟି ଚକଟି ପକେଇଲା । ଗୋଟି ଗୋଟି କରି ଲୁଗାପଟା ବାହାରକୁ ଫିଙ୍ଗିଲା । ପୁଣି ଭିତରେ ରଖିଲା, ମିଳିଲା ନାହିଁ । ସୁଶୋଭନ ତା' ହେଲେ ବଜାରକୁ ନେଇ ଯାଇଥିବ । ତାର ଏ ବ୍ୟବହାର ଚମ୍ପାକୁ ଆଦୌ ଭଲ ଲାଗିଲା ନାହିଁ । ତାରି ପାଇଁ ତ ଆଣିଥିଲା, ଅନ୍ତତଃ ଥରେ ପଚାରି ନେଇଥିଲେ ହେଇ ନ ଥାନ୍ତା ।

ସେ ଅଭିମାନରେ ଗରଗର ହେଇ ଅପେକ୍ଷା କଲା ସୁଶୋଭନକୁ । ଟିଫିନ୍ ସମୟ ଗଡ଼ିଲା । ମଧ୍ୟାହ୍ନ ଭୋଜନ ସମୟ ବି । ସୁଶୋଭନର ଖବର ନାହିଁ । ସନ୍ଧ୍ୟା

ହେଲା । ସପଟା ଉପରେ ସେ ମୁହଁମାଡ଼ି ପଡ଼ିଛି । କାନ୍ଦିକାନ୍ଦି ଆଖି ଦୁଇଟା ଫୁଲି ଗେଣ୍ଡା ଭଳି ଦିଶୁଛି । ଭୋକରେ ପେଟ ଭିତରଟା ହନ୍ତାଳି ହେଉଛି । ପେଟ ଭିତରେ ମାଂସ ପିଣ୍ଡୁଳାଟା ଛଟପଟ ହେଇ ଜଣାଇ ଦେଉଚି ତାକୁ ବି ଦରକାର ଖାଦ୍ୟ । ଗୋଡ଼ ହାତ ଅବଶ ଲାଗିଲାଣି । ବାନ୍ତି ବାନ୍ତି ବି ଲାଗୁଛି । ଘରଟା ଭିତରେ କିଟି କିଟି ଅନ୍ଧାର ।

ହଠାତ୍ କାହାର କର ସ୍ପର୍ଶରେ ସେ ଚିତ୍କାର କରିଉଠିଲା । ''ସକାଳ ପହରୁ ଗଲ ଯେ, ଆସି ରାତି ହେଲାଣି । ଅଚିହ୍ନା ଅଜଣା ଜାଗାରେ ମୁଁ ଏକୁଟିଆ'..., ତା କଥା ପୂରା କରିବାକୁ ନଦେଇ ଏକ ଶକ୍ତ ହାତ ତା ପାଟି ଚାପି ଧରିଲା ।

ଚୁପ୍ କର, ଚୁପ୍ କର । ମୁଁ ତୋର ସେ ନାଗର ନୁହେଁ ଲୋ । ମୁଁ ତୋ ପିଲାର ବାପା, ତୋ ପିଲାକୁ ମୁଁ ବାପାର ପରିଚୟ ଦେବି । ଏତେ ବଡ଼ ଦୁନିଆଁରେ ମୋର କେହି ନାହାଁନ୍ତି ଲୋ ! ଲୋକ କହୁଛନ୍ତି ମୁଁ କୁଆଡ଼େ ଅଣପୁରୁଷା ବୋଲି ମୋ ପ୍ରଥମ ସ୍ତ୍ରୀ ଆତ୍ମହତ୍ୟା କଲା । ଦ୍ୱିତୀୟ ସ୍ତ୍ରୀ ଘର ଛାଡ଼ି ଚାଲିଗଲା । ମୁଁ ବି ଦୁନିଆକୁ ଦେଖେଇ ଦେବିଲୋ, ସେମାନେ ଯାହା ଭାବୁଛନ୍ତି ମୁଁ ସେୟା ନୁହେଁ । ମୁଁ ବି ବାପା ହୋଇପାରେ । ଏଇ ଦେଖ । ମୋର ସ୍ତ୍ରୀ ପେଟରେ ପିଲା । ସେ ଟୋକାକୁ ତାର ପାଉଣା ଦେଇ ବିଦା କରିଦେଇଛି । ଆଜିଠୁ ତୁ ମୋର ସ୍ତ୍ରୀ, ତୋର ପେଟର ପିଲା ମୋର । ମୋର ଅଚଳାଚଳ ସଂପତ୍ତି । ତୁ ଭୋଗ କରିବୁ, ହଁ ହଁ ତୁ ଭୋଗ କରିବୁ । ରାଣୀ ହେଇ ରହିବୁ ।

ଚମ୍ପାର ଚେତା ବୁଡ଼ି ଆସୁଥିଲା । ଝାପ୍‌ସା ଅନ୍ଧାରରେ ଲୋକଟା ଲାଗୁଥିଲା କେଉଁ ଏକ ନିରୀହ ରାଜକୁମାରୀକୁ ରାଜପ୍ରାସାଦରୁ ମାୟାରେ ଉଠେଇ ଆଣିଥିବା ଲୋକକଥାର ପ୍ରାଗୈତିହାସିକ ଦାନବ ଭଳି । ତାର କଣ୍ଠ ସ୍ୱର ଚମ୍ପା କାନରେ ହାତୁଡ଼ି ପିଟିବା ଭଳି ଲାଗୁଥିଲା । ସେ ସତକୁ ସତ ଚେତା ହରେଇ ଦେଲା ।

ଏ ଘଟଣା ଘଟିବାର ସାତ ଆଠ ଦିନ ପରେ ଗାଁ ଲୋକଙ୍କ ମୁହଁରୁ ଶୁଣିବାକୁ ମିଳୁଥିଲା- କେଡ଼େ ବାଜେ ଝିଅଟା ମ ! ଧନ ଲୋଭରେ ଦରବୁଢ଼ାଟା ସାଙ୍ଗରେ ପଳେଇଗଲା । ସୁଶୋଭନ ଅବଶ୍ୟ ଦେଇଥିଲା ଗାଁରେ ଚମ୍ପାର ଏହି ଖବର ।



# ମୁକ୍ତିର ସ୍ୱାଦ

ତପୁ ଉଦାସ ଦୃଷ୍ଟିରେ କିଆ ଗୋହିରି ମଝିଦେଇ ଲମ୍ବି ଯାଇଥିବା ରେଳ ଧାରଣା ଆଡ଼େ ଚାହିଁ ରହିଥିଲା । ନିରାସକ୍ତ ନିର୍ବିକାର ଭାବରେ ସେ ଖରା କାକର ସହି ପିଠି ଦେଖାଇ ପଡ଼ି ରହିଛି, କେତେବେଳେ କୋଳାହଳ କରି ପାସେଞ୍ଜର୍ ଗାଡ଼ି ତା' ଉପରେ ସବାର ହୋଇଆସୁଛି ତ ବିଜୁଳି ବେଗରେ କୋଉ ଛଟକରେ ମାଡ଼ିଆସି ଉଭାନ୍ ହୋଇ ଯାଉଛି ଏକ୍ସପ୍ରେସ୍ । ପୁଣି କେତେବେଳେ ଧକେଇ ଧକେଇ ମାଲଗାଡ଼ିଟା ଘୋଷାରି ହୋଇ ଚାଲିଯାଉଛି । ମାମୁଁଙ୍କ ଭଳି ସେ ସହି ଯାଉଛି ସବୁ । ଆପତ୍ତି ନାହିଁ, ଅଭିଯୋଗ ନାହିଁ, ପ୍ରତିକ୍ରିୟା ନାହିଁ କି ପ୍ରତିବାଦ ନାହିଁ । ଆଈ କହୁଥିଲା ପୃଥିବୀ ମା'କୁ କୁଆଡ଼େ ବାସୁକୀ ସାପ ଏମିତି ଫଣାରେ ଟେକି ଧରିଛି । ଟିକିଏ ବି ହଲେ ନାହିଁ । ସେ କଡ଼ ଲେଉଟେଇଲେ ପୃଥିବୀରେ

ଭୂମିକମ୍ପ ହୁଏ । ଆଉ ଏ ରେଳ ଲାଇନ୍ ଟା ଥରେ କଡ଼ ଲେଉଟାନ୍ତା କି ? ସେ ସେମିତି କିଛି କରେନାହିଁ । ମାମୁଁଙ୍କ ଭଳି ସିଏ ସର୍ବ ସହଣିକା ।

ରେଳ ଲାଇନ୍ ଉପରେ ଧସେଇ ଚାଲୁଥିବା ଚଳନ୍ତା ଟ୍ରେନ୍ ଆଉ ମାଈଁ ଭିତରେ କିଛି ଫରକ ଦେଖୁ ନଥିଲା ତପୁ । ମାଈଁ ଯେତେବେଳେ ମାତେ ଚଳନ୍ତା ଟ୍ରେନ୍‌ଠୁଁ ବି ଆହୁରି ଭୟଙ୍କର ଦିଶେ, ଯେତେବେଳେ କ'ଣ, ତପୁ ପାଇଁ ତ ସିଏ ସବୁବେଳେ ସେମିତି । ଗୋଲ ଗୋଲ ଆଖି ଦୁଇଟି ଜଳନ୍ତା ନିଆଁ ଭଳି ସବୁବେଳେ ଡହଡହ, ତପୁ ସେ ଆଖି ଦୁଇଟାକୁ ଚାହିଁପାରେ ନାହିଁ । ମାଈଁ ସାଙ୍ଗେ କଥା ହେଲାବେଳେ ସିଏ ମୁହଁ ତଳକୁ କରି କଥା ହୁଏ । ସେଇଥିପାଇଁ ମାଈଁ ତାକୁ ଡାକେ ପୋତାମୁହାଁ ତମ୍ପ । ଏ ଅଶ୍ଳୀଳ ଶବ୍ଦ ଦୁଇଟାକୁ ସେ ଆଦୌ ସହ୍ୟ କରିପାରେ ନାହିଁ, ଅପମାନ ବୋଧରେ ସେ ସଢ଼ିଯାଏ । ତା' ଦେହସାରା କାନକୋଳି କଣ୍ଟା ଫୋଡ଼ିହେଲା ପରି ଲାଗେ । ସେ ବିଦ୍ରୋହୀ ହୋଇଉଠେ । ତଥାପି ସେଇ ଡାକରେ ସେ ଜବାବ ଦିଏ, ତା ନହେଲେ ଗଉଁଆ, ଚୁପ ସୈତାନ୍ ଭଳି ଆହୁରି କେତେ ଅସଭ୍ୟ ଶବ୍ଦର ବର୍ଷା, ଡରିମରି ସେ ଏତେ ଟିକିଏ ହୋଇଯାଏ । ମାଈଁମାନେ ସବୁ ଏମିତି କାହିଁକି ଯେ ?

ଜକେଇ ଆସୁଥିବା ଲୁହ ଦୁଇବୁନ୍ଦାକୁ ଦୁଇ ପାପୁଲିରେ ପୋଛୁ ପୋଛୁ ସେ ଆକାଶ ଆଡ଼େ ଚାହିଁଲା । ପଶ୍ଚିମ ଆକାଶଟା ଏକଦମ୍ ଲାଲ୍ ଦିଶୁଥିଲା । ସୂର୍ଯ୍ୟଙ୍କର ପ୍ରଖର ତେଜ ଆଉ ନାହିଁ । ନାଲି ବଲ୍‌ଟିଏ ଧୀରେ ଧୀରେ ତଳକୁ ଖସି ଯାଉଥିଲା । ସତରେ ସେ କୁଆଡ଼େ ଯାଇ ରହନ୍ତି ସାରାରାତି ? ଆଈ କହୁଥିଲା ସେ କୁଆଡ଼େ ତା' ମା' କୋଳକୁ ଯାଉଛନ୍ତି । ତାଙ୍କ ମା' ବି କ'ଣ ମାଈଁ ଭଳି ଏମିତି ରାଗୀ ? ନା ବୋଧହୁଏ ନୁହେଁ । ମାଆମାନେ କ'ଣ ରାଗନ୍ତି ? ଏଇ ମାଈଁ ଶବ୍ଦଟା ହିଁ ସବୁ ଅନର୍ଥର ମୂଳ । ସିଏ ମାଈଁକୁ ମାଆ ଡାକିଲେ ମାଈଁ କ'ଣ କୁନାକୁ ଗେଲକଲା ଭଳି ତାକୁ ବି ଗେହ୍ଲା କରନ୍ତେ ? ତା' ପାଇଁ ଭାତଥାଳି ଟାକୁ ଛେଚିଲା ପରି ଥୋଇଦେଇ ମାଈଁ ଯେତେବେଳେ କୁନାକୁ କୋଳରେ ପୂରେଇ ବଳେଇ ବଳେଇ ବାଧକରି ଖୁଆଏ ତପୁ ତଣ୍ଟିରେ ଗୁଣ୍ଡାଟା ଅଟକି ଯାଏ । ମାଈଁ କାନି ଅଗରେ କୁନାର ମୁହଁରୁ ଝାଳ ପୋଛିଲା ବେଳେ ତପୁ ଆଖିରେ ଲୁହ ଜକେଇ ଆସେ । ଶୀତୁଆ ରାତିରେ ମାଈଁ କୋଳରେ କୁନା ଗୁଞ୍ଜିହୋଇ ଶୋଇଥିବା ବେଳେ ତା'ର ବି ଇଚ୍ଛା ହୁଏ ଛିଣ୍ଡା କମଳ ଖଣ୍ଡକ ଫିଙ୍ଗିଦେଇ କାହା କୋଳରେ ମୁଣ୍ଡ ଗୁଞ୍ଜି ଶୋଇପଡ଼ନ୍ତା, କିନ୍ତୁ କାହା କୋଳରେ ? ମାଈଁର ହାଡ଼ଥରା ଚେହେରା ମନେ ପଡ଼ିଗଲେ ସେ ଶଙ୍କିଯାଏ । ସେ ତା'ର ମାଆ ନୁହେଁ ମାଈଁ ।

ତପୁର ଭାରି ରାଗ ହେଉଥିଲା ତା' ମାଆ ଉପରେ । କାହିଁକି ସେ ତାକୁ ଛାଡ଼ି ଚାଲିଗଲା ଯେ ? ତା'ର ଯଦି ଯିବାର ଥିଲା ତାକୁ ସାଙ୍ଗରେ ନେଇ ଗଲାନି କାହିଁକି ? ଏଇକଥା କହିଲେ ଆଈ ଭାରି ମନଦୁଃଖ କରେ । ତା' ପାଟିରେ ହାତ ପାପୁଲି ଦେଇ ଛାତିକୁ ଆଉଜେଇ ଆଣେ । ଆଉ କେବେ ବି ଏମିତି କଥା ପାଟିରେ ନ ପୂରେଇବା ପାଇଁ ତାଗିଦ୍ କରେ । ଆଈ କହୁଥିଲା ତା' ମାଆ କୁଆଡ଼େ ଭାରି ଭଲ ମଣିଷ ଥିଲା । ଆଉ ଭଲ ମଣିଷ ମାନଙ୍କୁ ଭଗବାନ୍ ଶୀଘ୍ର ତାଙ୍କ ପାଖକୁ ନେଇ ଯାଆନ୍ତି ବୋଲି ବି କହୁଥିଲା । ସେଇଥି ପାଇଁ ମାଆ ଚାଲିଗଲା ଆଉ ତା ପଛେ ପଛେ ଆଈ ବି । ଆଈ ବି ଭାରି ଭଲ ମଣିଷ ଥିଲା । ସେ ଥିଲାବେଳେ ତପୁକୁ କେହି ହୁଦ୍ ବୋଲି କହିଲେ ସେ ଦାନ୍ତ ଲଗେଇ ଦେଉଥିଲା । ସେ ତାକୁ କୋଳରେ ପୂରେଇ ଶୋଉଥିଲା । ତା' ପାଇଁ ଭଲ ଭଲ ଚିଜ ଅଣ୍ଟାରେ ଗୁଞ୍ଜି ରଖୁଥିଲା । ତା'ର ମଇଳା ଉଷୁମାଳିଆ ଗନ୍ଧ କାନିରେ ତା ମୁହଁରୁ ଝାଳ ପୋଛି ଦେଉଥିଲା । ସେ ଗନ୍ଧ ମହ ମହ ବାସୁଥିଲା ତପୁକୁ । ଭଗବାନ ତାକୁ ବି ଉଠେଇ ନେଇଗଲେ ।

ତପୁର ରାଗଟା ମାଆ ଉପରୁ ଭଗବାନଙ୍କ ଉପରକୁ ଗଲା । ଭଲ ମଣିଷମାନେ ଖାଲି ଭଗବାନଙ୍କୁ ଦରକାର ? ମଣିଷମାନଙ୍କ ପାଇଁ ଖାଲି ଖରାପ ମଣିଷ ? ତା' ବାପା ବି ବୋଧେ ଏଇ ଖରାପ ମଣିଷମାନଙ୍କ ଭିତରେ ଗଣାହେବ । ତା ନହେଲେ ସିଏ ତାକୁ ମାମୁଁ ଘରେ କାହିଁକି ଛାଡ଼ିଥାନ୍ତା । ସେ ଆଣିଥିବା ନୂଆ ମାଆଟା ତ ସତକୁ ସତ ଖରାପ । ତପୁର ଛାଇ ପଡ଼ିଲେ ତା' ନାହି ଡିଏଁ । ଆଉ ସେ ନିଜେ ? ନିଜେ କ'ଣ ଖରାପ ପିଲା ? ହେଇଥିବ, ସେଇଥି ପାଇଁ ଭଗବାନ ତାକୁ ତାଙ୍କ ପାଖକୁ ନଉନାହାଁନ୍ତି । ମାଡ଼, ଗାଳି, ନିନ୍ଦା, ଅପବାଦ ସହିବା ପାଇଁ ଛାଡ଼ି ଦେଇଛନ୍ତି । ନହେଲେ ସିଏତ ଯାଇ ମାଆ ଆଉ ଆଈଙ୍କ ପାଖରେ ରହିଥାନ୍ତା ।

ସତ କହିବାକୁ ଗଲେ ସେ ଯେତିକି ଖରାପ ପିଲା ବୋଲି ମାଈଁ, ମାମୁଁଙ୍କ ପାଖରେ ଅଭିଯୋଗ କରେ, ସାଇ ପଡ଼ିଶା, ଗଲା ଆଇଲା ଲୋକଙ୍କୁ କୁହେ, ସିଏ ପ୍ରକୃତରେ ସେତିକି ଖରାପ ପିଲା ନୁହେଁ । ତା'ର ସବୁକଥା ମାଈଁଙ୍କୁ ସବୁବେଳେ ମିଛ ଲାଗିଲେ ବି ପ୍ରକୃତରେ ସେ କେବେ ମିଛ କହେ ନାହିଁ । ମାଈଁର ମାଡ଼ଗାଳି ଭୟରେ ମିଛ କଥାଟିଏ କହିବ ବୋଲି ଭାବିଲା ବେଳକୁ ତା' ତଣ୍ଟି ଅଠା ଅଠା ହୋଇଯାଏ । ପେଟ ଭିତର ମାଂସ ସବୁ ମେଞ୍ଚା ମେଞ୍ଚା ହୋଇଯାଏ, ଦେହରୁ ଶ୍ରମଝାଳ ନିଗିଡ଼ି ପଡ଼େ । ତା'ର ମିଛ କହିବା ହୁଏ ନାହିଁ ।

କିନ୍ତୁ ସିଏ ଥରେ ମିଛ କହିଥିଲା । ତା'ର ସବୁ ସତକଥାକୁ ମାଈଁ ମିଛବୋଲି ଗ୍ରହଣ କଲେ ବି ତା'ର ସେ ମିଛ କଥାକୁ ସେ ସତ ବୋଲି ମାନି ନେଇଥିଲା ।

ସେଥିପାଇଁ ଜଳନ୍ତା ଲୁହା ଗୋଜିଣା ଚେଙ୍କା ବି ତାକୁ ଖାଇବାକୁ ପଡ଼ିଥିଲା । ଅଜାଣତରେ ତା ହାତଟା ବୁଲି ଆସିଲା ବାଁପଟ ଅଣ୍ଟାତଳ ଦୁଇ ଇଞ୍ଚ ବହଳର ପୋଡ଼ା ଦାଗଟା ଉପରେ । ସେଦିନ ସେଇ ପୋଡ଼ା ଘା ଉପରେ ମଲମ ଲଗେଇ ଦେଉ ଦେଉ ମାମୁଁଙ୍କ ଆଖିର ଦୁଇଧାର ଲୁହ ଯେତେବେଳେ ତା କପାଳ ଛୁଇଁଲା, ତାକୁ ଲାଗିଲା ମିଛ କହି ସେ ଯେଉଁ ପାପ ଅର୍ଜନ କରିଥିଲା ସବୁ ଯେମିତି ଧୋଇ ହୋଇଗଲା । ସେ ପୁଣି ଗଙ୍ଗାଜଳ ଭଳି ପବିତ୍ର ହୋଇଗଲା । ସିଏ ମାମୁଁଙ୍କ ଗୋଡ଼ ଧରି କହୁଥିଲା, ''ମାମୁଁ ! ତମ ଗୋଡ଼ ଧରୁଚି, ତମେ କେବେ ବି ସତକଥା ମାଇଁକୁ କହିବନି । ନହେଲେ ବିନି ମାଉସୀ ଆଉ ରାଜୁ ଭାଇଙ୍କୁ ମାଇଁ କେବେ ବି ଏ ଘର ଦୁଆର ମାଡ଼ିବାକୁ ଦେବେନି ।'' ମାମୁଁ ତାକୁ ନିଜ ଆଡ଼କୁ ଆଉଜାଇ ଆଣି ଜାବୁଡ଼ି ଧରିଥିଲେ କିଛି ସମୟ ।

ବିନି ମାଉସୀ ଭାରି ଅଭାବୀ ମଣିଷ । ସୁର ମଉସା ନିକମାଟା । ଗଞ୍ଜେଇ ଖାଇ ଖାଇ ସବୁ ସମ୍ପତ୍ତି ଉଡ଼େଇ ଦେଲା, କେବଳ ଡିହ ଖଣ୍ଡିକ ଛାଡ଼ିଦେଲେ ତା'ର ଆଉ କିଛି ନାହିଁ, ତା ପୁଅ ରାଜୁଭାଇ । ଏ ବର୍ଷ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାଶ୍ କରିଥିଲା । କଲେଜରେ ଆଡ଼ମିଶନ ପାଇଁ ହାତରେ କିଛି ପଇସା ନଥିବାରୁ ମାମୁଁଙ୍କ ପାଖରେ ଆସି ସେ କେତେ ନେହୁରା ହେଲା, ନିଉଛାଳି ହେଲା । ତପୁ ଜାଣିଛି ମାମୁଁଙ୍କ ହାତରେ କିଛି ପଇସା ନଥାଏ । ଦରମା କେତେ ସେ ପା'ନ୍ତି କେଜାଣି । ଦରମା ପାଇବା ଦିନ ସବୁ ପଇସା ମାଇଁ ହାତକୁ ବଢ଼ାଇ ଦିଅନ୍ତି । ମାଇଁ ଗଣି ଗଣି ନିଏ, କେଉଁ ମାସରେ ଉଣା ଅଧିକା ହେଲେ ହିସାବ ମାଗେ । ମାଇଁ ଚଳାଏ ଘର ।

ମାମୁଁ ସେଦିନ ବିନି ମାଉସୀ ଦୁଃଖ ସହି ପାରିଲେନି,- ଉଠିଯାଇ ଥାକ ଉପରୁ ନାଲି ପଥର ବସା ମୁଦିଟିଏ ଆଣି ତା ହାତକୁ ବଢ଼େଇ ଦେଇ କହିଲେ,- 'ତୁ ଏଇଟା ନେଇଯା, ବିକିଦବୁ, ଯାହା ବାହାରିବ ରାଜୁର ଆଡ଼ମିଶନ୍ କରିଦେବୁ ।'

ବିନି ମାଉସୀ ଆହୁରି ବିକଳ ହୋଇ କହିଲା ନାଇଁ ଭାଇ ! ମୁଁ ପଛେ ଖାଲି ହାତରେ ଫେରିଯିବି, ମୁଁ ଏ କାମ ଜମା କରିବିନି । ମୁଁ ଭାଉଜ କଥା ଜାଣିଛି । ସେ ଖଣ୍ଡ ପ୍ରଳୟ କରିଦେବ ଏ କଥା ଜାଣିଲେ । ମାମୁଁ ନିର୍ଲିପ୍ତ କଣ୍ଠରେ କହିଲେ, 'ସେ କଥା ମୁଁ ବୁଝିବି । ତୁ କିନ୍ତୁ ଭୁଲ୍‌ରେ ତାକୁ ଏ କଥା କହିବୁନି । ଏମିତିକି ତୁ ଏଠିକି ଆସିବା କଥା ବି । ସେ ଭାରି ସନ୍ଦେହୀ ।'

ବିନି ମାଉସୀ ମୁଦିଟା କାନିରେ ବାନ୍ଧି ଲୁହ ପୋଛି ପୋଛି ଯେମିତି ଆସିଥିଲା ସେମିତି ଚାଲିଗଲା । ଦୂରରେ କବାଟକୁ ଆଉଜି ଠିଆ ହୋଇଥିଲା ତପୁ । ତା'

ଉପରେ ମାମୁଁଙ୍କର ଦୃଷ୍ଟି ପଡ଼ିବାରୁ ସେ ତଳକୁ ମୁହଁ କଲେ । ତା'ପରେ ଏକା ମୁହାଁ ହୋଇ ଘରୁ ଚାଲିଗଲେ । ମାମୁଁଙ୍କୁ ଏତେ ଅସହାୟ ଯା ପୂର୍ବରୁ ସେ କେବେ ଦେଖି ନଥିଲା । ଦୁଇ ଦିନ ପରେ ମାଇଁ ବାପଘରୁ ଆସିଲେ । ଆସୁ ଆସୁ ଭୁଲ ବଶତଃ ଥାକ ଉପରେ ଛାଡ଼ି ଯାଇଥିବା ମୁଦିଟା ନ ଦେଖି ବ୍ୟସ୍ତ ହୋଇ ପଡ଼ିଲେ । ମାମୁଁ ସେତେବେଳେ ଘରେ ନଥିଲେ ।

ଏ ଟୋକା ! ଏ ଥାକ ଉପରେ ମୋ ମୁଦିଟା ଥିଲା କ'ଣ ହେଲା । ଫିଙ୍ଗି ଦେବାଭଳି କହିଲେ ମାଇଁ ।

ତପୁ କିଛି ଉତ୍ତର ଦେଲା ନାହିଁ ପ୍ରଥମେ । ମାଇଁ ଆହୁରି ଜୋରଦେଇ ପଚାରିଲେ, 'କିରେ, ମୁଁ କ'ଣ ପଚାରୁଛି ପରା । ପାଟିରୁ କ'ଣ କଥା ବାହାରୁନି ?

ତପୁ ଚପା କଣ୍ଠରେ କହିଲା, 'ହଁ' ।

କୋଉଠି ରଖିଛୁ ଆଣିଲୁ– ମାଇଁ ଅର୍ଡର ଦେବାଭଳି କହିଲେ । ତପୁ ଥରିଲା କଣ୍ଠରେ କହିଲା, ମୁଦିଟା ମୁଁ ତମକୁ ଦେବି ବୋଲି ପକେଟ୍‌ରେ ରଖିଥିଲି । ପୋଖରୀରେ ଗାଧେଇଲାବେଳେ କୋଉଠି ପଡ଼ିଗଲା । ଯେତେ ଖୋଜିଲି ଆଉ ପାଇଲିନି ।

ମାଇଁର ହିଂସ୍ରତା ସେଦିନ ଚରମ ସୀମାରେ ପହଞ୍ଚିଥିଲା । ପଥର ପାଲଟି ଯାଇଥିଲା ତପୁ । ଏପରିକି ନିଆଁ ଗୋଜିଣା ଚେଙ୍କକୁ ବି ସେ ସହି ଯାଇଥିଲା ନିର୍ବିକାର ଭାବରେ । ସେଇ ଦିନରୁ ମାଇଁ ଆଖିରେ ସେ ପକ୍କା ଚୋର ପାଲଟି ଯାଇଥିଲା ।

କିନ୍ତୁ ଆଜିର ଘଟଣାକୁ ଯେତେ ସଫେଇ ଦେଲେ ବି ମାଇଁ ମାନୁ ନଥିଲା । ଯିଏ ସୁନାମୁଦି ଘରୁ ଚୋରେଇ ନେଇ ବିକି ଦେଇ ପାରୁଛି, ପକେଟରୁ ଟଙ୍କା ୧୦୦ଟା ବାହାର କରିନେବା ବିଚିତ୍ର ନୁହେଁ ତା ପକ୍ଷରେ ।

ଚାରିଆଡ଼େ ଅନ୍ଧାର ମାଡ଼ି ଆସିଲାଣି । ସେ ଆଜି ଘରକୁ ଫେରିବ ନାହିଁ ବୋଲି ଠିକ୍ କରିଛି । ଅନ୍ତତଃ ମାଇଁର ସେଇ ମାଉସୀ ପୁଅ ଭାଇ ଥିବା ପର୍ଯ୍ୟନ୍ତ । ମାଇଁର ନିନ୍ଦା, ଗାଳି, ମାଡ଼ ଖାଇ ଖାଇ ସେ ଅଭ୍ୟସ୍ତ ହୋଇଯାଇଥିଲା । କିନ୍ତୁ ସେ ଲୋକଟାର ତାକୁ ଚୋର ଡକେଇତ କହିବାଟାକୁ ସେ ଆଦୌ ବରଦାସ୍ତ କରି ପାରୁନଥିଲା । ଲୋକଟାକୁ ଆଦୌ ସହ୍ୟ କରିପାରେ ନାହିଁ, ତପୁ । କୋଉଠି କୋଉ କମ୍ପାନୀରେ ଚାକିରି କରିଛି ବୋଲି ସେ କହେ । ଦୁଇ ତିନି ମାସରେ ଥରେ ଆସେ ଆଉ ଦିନେ ଦୁଇଦିନ ରହି ଚାଲିଯାଏ । ମାଇଁ ତାକୁ ନ' ତିଅଣ ଛ' ଭଜା କରି ଖାଇବାକୁ ଦିଏ । ଲୋକଟା ଗଳାଫଟେଇ ସବୁବେଳେ କଥା ହେଉଥିବ । କାରଣ ଅକାରଣରେ ହେଁ ହେଁ ହୋଇ ହସୁଥିବ । ସେ ଆସିଲେ ଘର ଖାଲି ସିଗାରେଟ

ଗନ୍ଧରେ ଭାସିଉଠେ । ଛକ ଦୋକାନରୁ ତା' ପାଇଁ ପାନ, ପୁଡ଼ିଆ, ସିଗାରେଟ୍ ଆଣିବାକୁ ପଡ଼େ ତପୁକୁ । ସେ ଘରେ ଥିବା ପର୍ଯ୍ୟନ୍ତ ମାମୁଁ ବି କେମିତି ଗମ୍ଭୀର ହୋଇଯାଆନ୍ତି । ଖାଇବା ପିଇବାରେ ତାଙ୍କର ଠିକ୍ ଠିକଣା ରହେନି । ବେଳେବେଳେ ବହୁତ ଡେରିରେ ଫେରନ୍ତି ଘରକୁ । ଗୁମ୍‌ସୁମ୍ ରହନ୍ତି । ଅନ୍ୟ ମନସ୍କ ଜଣାପଡ଼ନ୍ତି । ଯାହା ପଚାରିଲେ ହଁ କି ନାହିଁରେ ଜବାବ ଦିଅନ୍ତି ।

ଭୋକରେ ତା' ପେଟ ଆଉଟୁ ପାଉଟୁ ହେଇଯାଉଥିଲା । ପାଖ ନଳକୂଅରୁ ବାଁ ହାତରେ ମାଡ଼ି ଡାହାଣ ହାତରେ ଚଳ ଚଳ କରି କେଇ ଚଳ ପାଣି ପିଇ ଗଲା । ତା'ପରେ ସିମେଣ୍ଟ ବେଞ୍ଚରେ କୁଣ୍ଡଳୀ ମୋଡ଼ି ଶୋଇବାକୁ ଚେଷ୍ଟା କଲା ।

ତପୁ.... ତପୁ...... ଏ ତପୁ......

ତପୁର କାନରେ ପଡ଼ିଲା ।ଏ କଣ୍ଠ ସ୍ୱର ତ ମାମୁଁଙ୍କର । ମାମୁଁ ଫେରିଲେଣି । ମାଈଁଙ୍କ ଠୁ ସବୁକଥା ଶୁଣି ସିଏ ବି କ'ଣ ବିଶ୍ୱାସ କରୁଥିବେ ଯେ, ମୁଁ ପଇସା ଚୋରି କରିଛି ? ବୋଧହୁଏ ନା । ତଥାପି ସିଏ ଯଦି ମାଈଁଙ୍କ କଥା ସତ ବୋଲି ଭାବନ୍ତି, ସେ ତାଙ୍କୁ ମୁହଁ ଦେଖାଇ ପାରିବନି ।

ମାମୁଁଙ୍କ କଣ୍ଠ ସ୍ୱର ଅଠା ହୋଇ ଆସୁଛି । ତପୁ ମୁଣ୍ଡ ଟେକି ଚାହିଁଲା । ବାଙ୍କ ମୋଡ଼ରେ ଝାପ୍‌ସା ଆଲୁଅରେ ମାମୁଁଙ୍କ ମୁହଁ ଦିଶିଲା । ତପୁ ଉଠି ସିଧାହୋଇ ବେଞ୍ଚ ଉପରେ ବସିଲା । ମାମୁଁଙ୍କର ମୁହାଁମୁହିଁ ହୋଇଗଲା । ମାମୁଁ ଆଉ ଟିକିଏ ଲମ୍ବା ଲମ୍ବା ପାହୁଣ୍ଡ ପକାଇ ଡାହାଣ ହାତଟା ବଢ଼େଇ ତା' ପାଖକୁ ମାଡ଼ି ଆସୁଥିଲେ ।

ତପୁ ଏକା ମୁହାଁ ହୋଇ ରେଳଲାଇନ୍ ମଝିରେ ଧାଇଁ ଚାଲିଲା ଆଗକୁ ଆଗକୁ ।

ପଛରୁ ମାମୁଁଙ୍କ ଡାକ ଶୁଭୁଥିଲା, ତପୁ..... ତପୁରେ..... ! ଆ... ଆ... ଘରକୁ ଆ । ମୋ ସୁନାଟା, ଆ ଘରକୁ ଆ..... । ତପୁ କାନରେ କିଛି ପଡୁ ନଥିଲା କି ଆଖି ଆଗରେ କିଛି ଦିଶୁ ନଥିଲା ତାକୁ ଖାଲି ଶୁଭୁଥିଲା ମାଈଁର କର୍କଶ କଣ୍ଠ ନିସୃତ ଅସଭ୍ୟ ଶବ୍ଦ...

ଏ ତମ୍ପ, ଏ ପୋଡାମୁହାଁ... ଏ ତମ୍ପ, ଏ ପୋଡାମୁହାଁ.... ଏ ତମ୍ପ, ଏ ପୋଡାମୁହାଁ.....

କିଆ ଗୋହିରୀ, ନଈ, ନାଳ, ବୃକ୍ଷ, ଲତା, ପାହାଡ଼, ପର୍ବତ, ଆକାଶ ପୃଥିବୀ ସର୍ବତ୍ର ଯେମିତି ସେ ଅଶ୍ଳୀଳ ଶବ୍ଦ ଦୁଇଟା ବିଛାଡ଼ି ହୋଇଗଲା । ସେ ଅସ୍ଥିର ହୋଇପଡ଼ିଲା । ତାର ଦୁଇ ହାତ ପାପୁଲିରେ ସେ ତାର କାନ ଦୁଇଟାକୁ ଜୋରରେ ଚାପି ଧରିଲା । ତା'ପରେ ଆଖି ଦୁଇଟାକୁ ବନ୍ଦ କରି ନିଷତିଆ ଦୌଡ଼ିଲା

ଆଗକୁ ଆଗକୁ । ମାଈଁର ସେଇ କଦର୍ଯ୍ୟ ଶବ୍ଦ ଦୁଇଟା ଅଣଚାଶ ପବନ ହୋଇ ତା' ଚାରିପଟେ ଯେମିତି ଏକ ଘୂର୍ଣ୍ଣିବାତ୍ୟା ସୃଷ୍ଟି କରିଦେଲେ । ତା' ପାଦ ତଳର ବସୁଧାଟା ତାକୁ ଦୁଲୁକିଲା ଭଳି ଲାଗିଲା । ଅତିଷ୍ଠ ହୋଇ ଆହୁରି ଜୋରରେ ସେ ପାପୁଲି ଦୁଇଟାକୁ ଆହୁରି ଶକ୍ତ କଲା କାନ ଉପରେ । ଆଖି ପତା ଦୁଇଟାକୁ ବି ସେମିତି ବଳ ଖର୍ଚ୍ଚକରି ବନ୍ଦ କରି ରଖିଲା । ତାର ପାଦ ଦୁଇଟାକୁ ଆହୁରି କ୍ଷୀପ୍ର କଲା । ତାକୁ ଦରକାର ମୁକ୍ତି । ଏ ଅସହ୍ୟ ଶବ୍ଦ ବାଣରୁ, ଏ ଯନ୍ତ୍ରଣା କ୍ଲିଷ୍ଟ ପରିବେଶରୁ, ଏ ପରିବାରରୁ, ଏ ଦୁନିଆରୁ । ତ୍ରସ୍ତ ହରିଣଟିଏ ଭଳି ସେ କେବଳ ଧାଉଁଥିଲା । ପଛରେ ମାମୁଁଙ୍କ କଣ୍ଠ ସ୍ୱର ବ୍ୟାକୁଳ ଓ ଅଶାନ୍ତ ହୋଇଉଠୁଥିଲା । ସେ ପଡ଼ି ଉଠି ଧାଉଁଥିଲେ ତା' ପଛରେ ।

ଏକ ସର୍ବଗ୍ରାସୀ କର୍କଶ ଶବ୍ଦ କରି ସେପଟୁ ବୀର ଦର୍ପରେ ମାଡ଼ି ଆସୁଥିଲା ଏକ୍ସପ୍ରେସ୍ ଟ୍ରେନ୍‌ଟା । ଚତୁର୍ଦ୍ଦିଗ ପ୍ରକମ୍ପିତ ହୋଇଉଠୁଥିଲା । ମାତ୍ର କେଇ ସେକେଣ୍ଡ ଭିତରେ ସବୁକିଛି ନିଶ୍ଚଳ ନିଷ୍ପ୍ରାଣ କରିଦେଇ ନିର୍ବିକାର ଭାବରେ ସେ ଚାଲିଗଲା ତା ରାସ୍ତାରେ । ବାସ୍- ରେଳ ଲାଇନ୍‌ର ଦୁଇପଟରୁ ଗଡ଼ି ପଡ଼ିଲେ ଦୁଇଟି ଜଡ଼ ପିଣ୍ଡ ଗଡ଼ ଗଡ଼ ହୋଇ ।

ସବୁ ଯାତନାର ଜତୁଗୃହକୁ ଅସ୍ୱୀକାର କରି ।



# ପରକୀୟା

ଏମିତି ଗୋଟିଏ ଶୀତୁଆ ସକାଳକୁ ନଷ୍ଟକରି ରିସିଭର ଉଠାଇବାକୁ ଆଦୌ ପ୍ରସ୍ତୁତ ନଥିବା ଶୁଭକାନ୍ତ ଅଗତ୍ୟା ନିଦ ମଳ ମଳ ଆଖିରେ ସେୟା ହିଁ କଲା । ସେପଟରୁ ଶତରୂପାର କଣ୍ଠସ୍ୱର ଭାସି ଆସୁଛି । ଆଜି ଦିନଟା ମୁଁ ତମକୁ ଉତ୍ସର୍ଗ କରିଦେଲି ଶୁଭକାନ୍ତ । ତମେ ଆସିବ । ମୁଁ ତମକୁ ଗୋଟିଏ ସର୍ପ୍ରାଇଜ୍ ଗିଫ୍ଟ ଦେବି । ଧେତ୍ ! ମନେ ମନେ କହିଲା ଶୁଭକାନ୍ତ । କି ଧାତୁରେ ଗଢ଼ା କେଜାଣି ଝିଅଟା । ପାଖରେ ଥିଲେ ବରଫର ଶୀତଳ ସ୍ତୂପଟିଏ ଭଳି ବସି ରହିବ, ଅଥଚ ଦୂରକୁ ଚାଲିଗଲେ ଆଇସ୍‌କ୍ରିମ୍ ଭଳି ବିଗଳିତ ହୋଇପଡ଼ିବ ।

ତଥାପି ଶତରୂପାର ଆକର୍ଷଣ ଅଲଂଘନୀୟ । ଶୁଭକାନ୍ତ ପାଇଁ ଶତରୂପା ସବୁଦିନେ ଏମିତି ଦୁର୍ବୋଧ କବିତାଟିଏ । ଶୁଭକାନ୍ତର ମନେପଡ଼ିଲା ।

ଶତରୂପା ସହ ତାର ଶେଷ ଦେଖା ହେଇଥିଲା ପୁରୀ ସମୁଦ୍ର ବେଳା ଭୂମିରେ, ପ୍ରାୟ ଏକ ବର୍ଷ ବିତିଗଲାଣି ଏ ଭିତରେ ।

ଅପୂର୍ବ ଦିଶୁଥିଲା ସେଦିନ ଶତରୂପା ।

ସମୁଦ୍ରର ସ୍ଫୀତ ବକ୍ଷ ଉପରେ ଦୃଷ୍ଟି ନିବଦ୍ଧ କରି ସେ ଶତରୂପାକୁ ପଢ଼ିବାକୁ ଚେଷ୍ଟା କରୁଥିଲା । ସକଳ ସାମର୍ଥ୍ୟ ଦେଇ ବାରମ୍ବାର ସାଗର ବକ୍ଷ ଫୁଲି ଉଠୁଥିଲା । ଉତ୍ତୋଳିତ ନୀଳବାହୁ ପ୍ରସାରିତ କରି ଆକାଶ ସ୍ପର୍ଶ କରିବାର ନିଷ୍ଫଳ ପ୍ରଚେଷ୍ଟା କରୁଥିଲା ।

ନିର୍ଲିପ୍ତ ନୀଳ ଆକାଶର ଅଗଣାରୁ ଚତୁର୍ଦ୍ଦଶୀର ଚାନ୍ଦକୁ ଛଡ଼େଇ ନିଜ ବକ୍ଷ ମଣ୍ଡନ କରିବାର କାମନାରେ । କିନ୍ତୁ ବ୍ୟର୍ଥତାରେ, ପରାଜୟର ଗ୍ଳାନିରେ ସେ ଆହତ ସର୍ପିଣୀ ଭଳି ଗର୍ଜି ଉଠୁଥିଲା ଯେମିତି ।

ଶତରୂପା ପ୍ରଥମେ ମୁହଁ ଖୋଲିଥିଲା । ପାପପୁଣ୍ୟର ପରିଭାଷାରେ ହୃଦୟର ଆବେଗକୁ କି ସଂଜ୍ଞା ତମେ ଦେବ ଶୁଭକାନ୍ତ ?

ଶୁଭକାନ୍ତ ଦୃଷ୍ଟି ଫେରେଇଲା ।

ଜ୍ୟୋତ୍ସ୍ନାଭିଜା ଶତରୂପାର କପାଳରେ ସିନ୍ଦୂର ବିନ୍ଦୁ ଖଣ୍ଡେ ଜ୍ୱଳନ୍ତ ଅଙ୍ଗାରର ଭ୍ରମ ସୃଷ୍ଟି କରୁଥିଲା । ଦିନେ ଦିନେ ଏମିତି ଅସମ୍ଭବ ଭାବେ ରକ୍ତିମ ଦିଶେ ଶତରୂପାର କପାଳ । ଶଙ୍କିତ ହୋଇପଡ଼େ ଶୁଭକାନ୍ତ ।

ତାର ନିରବତା ଅସହ୍ୟ ଯନ୍ତ୍ରଣାର ତୀର ବିଦ୍ଧ କରିଦେଲା ଶତରୂପାକୁ । ଧୈର୍ଯ୍ୟହରା ଶିଶୁଟିଏ ଭଳି ଅଳି କରି ସେ କହିଲା–

କୁହନା ଶୁଭକାନ୍ତ । ଚୁପ୍ ରହିଲ ଯେ । ଅନ୍ତରଙ୍ଗ ମୁହୂର୍ତ୍ତର ଉଷ୍ମ ଭାବାବେଗ ସବୁକୁ ସବୁବେଳେ ଏଇଭଳି ଅବାନ୍ତର ପ୍ରଶ୍ନରେ ଶୀତଳ କରିଦିଏ ଏମିତି । ତଥାପି ଶତରୂପା ଚତୁର୍ଦ୍ଦଶୀର ଚନ୍ଦ୍ରପରି ଖୁବ୍ ଲୋଭନୀୟ । ତାର ସାନ୍ନିଧ୍ୟ ପାହାନ୍ତା ପ୍ରହରର ସ୍ୱପ୍ନଭଳି ଅତ୍ୟନ୍ତ ସ୍ପର୍ଶକାତର । ଯେଉଁଠି ବସନ୍ତ ନାହିଁ କିନ୍ତୁ ମଳୟ ଅଛି । ଶ୍ରାବଣର ଆକାଶ ନାହିଁ କିନ୍ତୁ ଇନ୍ଦ୍ର ଧନୁ ଅଛି । ସେ ଅନ୍ୟକୁ ଜଳାଏ, କିନ୍ତୁ ନିଜେ ନିରୁତ୍ତପ୍ତ ରହେ ।

ଶୁଭକାନ୍ତର ଇଚ୍ଛା ହେଉଥିଲା– ଶତରୂପାର ନୀଳହ୍ରଦ ଭଳି ଦୁଇ କଥା କୁହା ଆଖି ପତା ଉପରେ ସରୁ ଚୁମ୍ବନଟିଏ ଆଙ୍କି ଦେଇ କହନ୍ତା ଏମିତି ଏଇ ନୀଳ ହ୍ରଦ ଭିତରେ ନିଜର ଉଷ୍ମତା ମାପିବାର ପ୍ରତିବିଧାନ ଯଦି କୁମ୍ଭୀପାକ ନରକ ହୁଏ, ତଥାପି ମୁଁ ସେଥିପାଇଁ ପ୍ରସ୍ତୁତ ରହିବି ଶତରୂପା । କିନ୍ତୁ ଶୁଭକାନ୍ତର ସକଳ ଆବେଗ ଉଦ୍ଦୀପନା ଓ ଉଷ୍ମତା ହିମଶୀତଳ ପାଲଟିଯାଏ । ବେଳେବେଳେ ଏମିତି ଗୋଟିଏ ଗୋଟିଏ ତାର ଧୃଷ୍ଟତାକୁ ଶତରୂପା ପ୍ରତିରୋଧ କରିପାରେ ନାହିଁ ସିନା କିନ୍ତୁ ତା ପ୍ରତି ଲୋମ ଅନୁଲୋମରେ ପ୍ରତିବାଦର ବାସ୍ନା ଅନୁଭବ କରେ ଶୁଭକାନ୍ତ । ମୁହୂର୍ତ୍ତକ ପାଇଁ ସେ ନିର୍ବାକ୍ ଓ ନିରୁତ୍ତପ୍ତ ହୋଇଯାଏ । ତା ଅଭିଧାନରେ ଦେହ କ୍ଷୁଧା କୁଆଡ଼େ ପ୍ରେମର ପବିତ୍ରତା ନଷ୍ଟକରେ ।

ଶୁଭକାନ୍ତର ଦୃଷ୍ଟିକୋଣ କିନ୍ତୁ ଭିନ୍ନ । ଶରୀର ଓ ମନ ଏଦୁଇଟିର ସମ ସମ୍ପୃକ୍ତି ବିନା ଯେଉଁ ପ୍ରେମ ତାହା ଆତ୍ମ ପ୍ରତାରଣା ବ୍ୟତୀତ ଅନ୍ୟକିଛି ନୁହେଁ । ତଥାପି ସେ ଶତରୂପାର ଇଚ୍ଛା ବିରୁଦ୍ଧରେ କିଛି କରେ ନାହିଁ । ଏଇଭଳି ସର୍ତ୍ତହୀନ ସର୍ତ୍ତରେ ତାଙ୍କର ସଂପର୍କ ।

ନିରାସକ୍ତ କଣ୍ଠରେ ଶୁଭକାନ୍ତ କହିଲା । ଏଭ୍ରିଥିଙ୍ଗ୍ ଇଜ୍ ଫେୟାର ଇନ୍ ଲଭ୍ ଆଣ୍ଡ ଓ୍ୱାର । ପବିତ୍ର ପ୍ରେମର ପରିଭାଷାକୁ ପାପପୁଣ୍ୟର ମାପଦଣ୍ଡରେ ମପା ଯାଏନା ଶତରୂପା ।

ଶତରୂପା ଶୁଭକାନ୍ତଠାରୁ ଛୁଇଁ ହେଉ ନଥିବା ଦୂରତ୍ୱରେ ବସିଥିଲା ପାଷାଣୀ କନ୍ୟା ଭଳି । ଶୁଭକାନ୍ତର ଉତ୍ତର ତାକୁ ତୃପ୍ତି ଦେଇପାରିଲା ନାହିଁ ।

ସ୍ୱାମୀର ଅଲକ୍ଷ୍ୟରେ ବାଞ୍ଛିତ ପୁରୁଷର ସାନ୍ନିଧ ଟିକେ ପାଇବାର ବ୍ୟାକୁଳତାକୁ କି ପବିତ୍ର ପ୍ରେମର ଆଖ୍ୟା ଦେବ ତମେ ଶୁଭକାନ୍ତ– ଶତରୂପାର କଣ୍ଠରେ ଅସହାୟତା । କିନ୍ତୁ ଚନ୍ଦ୍ରସେଣାପତ୍ନୀ ଶ୍ରୀରାଧାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଆକର୍ଷଣକୁ ବିଶ୍ୱଯେ ସର୍ବଶ୍ରେଷ୍ଠ ପ୍ରେମର ଗୌରବ ଦେଇଛ, ଏକଥା କ'ଣ ତମେ ଅସ୍ୱୀକାର କରିବ ଶତରୂପା ?

ଶତରୂପା ଏତେ ଗହନ ତତ୍ତ୍ୱ ଭିତରକୁ ପ୍ରବେଶ କରିବାକୁ ଚାହୁଁନଥିଲା । ସେ ପ୍ରସଙ୍ଗ ବଦଳେଇଥିଲା । କହିଲା, ତମେ ବିବାହ କର ଶୁଭକାନ୍ତ ।

ଆଜି ଏତେ ବର୍ଷପରେ ହଠାତ୍ ଏ ପ୍ରସଙ୍ଗ ଉଠୁଛି କାହିଁକି ? ପ୍ରଶ୍ନ କଲା ଶୁଭକାନ୍ତ ।

କଣ୍ଠରେ ବ୍ୟସ୍ତତାର ଭାବ ଫୁଟେଇ କହିଲା ଶତରୂପା ହାତପାଆନ୍ତାରେ ଥିବା ସବୁ ଇପ୍‌ସିତ ବସ୍ତୁକୁ ଆପଣାର କରିବାର କାମନା ମଣିଷର ଆଦିମ ତମ ପ୍ରବୃତ୍ତି । ମୁଁ ଚାହେଁ ତମେ ମୋ ପାଇଁ ଅପହଞ୍ଚ ହେଇଯାଅ । ମୋ ହାତ ଛୁଉଁ ନଥିବା ଓ ମୋ ଆଖି ପାଉନଥିବା ଯୋଜନ ଯୋଜନ ଦୂରତ୍ୱକୁ ତମେ ଚାଲିଯାଅ ।

ଶୁଭକାନ୍ତ ଅବିବାହିତ । ବୟସ ଯୌବନକୁ ଅତିକ୍ରାନ୍ତ କରିବାକୁ ବସିଲାଣି । ସେ ଯଦି ଚାହିଁଥାନ୍ତା ଶତରୂପା ତା'ପାଇଁ ଦୁଷ୍ପ୍ରାପ୍ୟ ନଥିଲା । କିନ୍ତୁ ସେ ନିଜେ ହିଁ ଓହରି ଯାଇଥିଲା ପ୍ରସ୍ତାବରୁ ।

ଶତରୂପା ବିବାହ କଲା ନିଜ ବ୍ୟବସାୟ ନେଇ ସର୍ବଦା ବ୍ୟସ୍ତ ରହୁଥିବା ସହରର ବିଶିଷ୍ଟ ଶିଳ୍ପପତିଙ୍କ ଦୁଲ୍ଲାଳ ଶୁଭେନ୍ଦୁ ଛୋଟରାୟଙ୍କୁ । ସବୁ ଶିଳ୍ପପତିଙ୍କ ପତ୍ନୀ ଭଳି ସେ ମଧ ଆକଣ୍ଠ ପାନ କରୁଥିଲା ପ୍ରାଚୁର୍ଯ୍ୟର କୁହୁ କୁହୁ ହା ହୁତାଶ ।

ଗମ୍ଭୀର ହୋଇ ଶୁଭକାନ୍ତ କହିଲା–

ଏଇ ସତ୍ୟ ପାଠ ଯଦି ତମ ହୃଦୟର, ତମେ ନିଶ୍ଚିନ୍ତ ରୁହ ଶତରୂପା ! ମୁଁ ତମକୁ ଆଉ ଡିଷ୍ଟର୍ବ କରିବିନି । ଶତରୂପାର ହୃଦତନ୍ତ୍ରୀରେ କିଏ ଯେମିତି କାନକୋଳି କଣ୍ଟାଟିଏ ବିନ୍ଧ କରିଦେଲା ।

ଏକ ଅବ୍ୟକ୍ତ ବେଦନାରେ ସେ ନିଃଶବ୍ଦ ଆର୍ତ୍ତନାଦ କଲା । ବୁଢ଼ୀ ଅସୁରୁଣୀର ଜୀବନ ନାଟିକା ଭଳି ତା ହୃଦୟ ଗମ୍ଭୁଜର କେଉଁ ନିଭୃତ କୋଣରେ ଯତ୍ନର ସହିତ ସାଇତି ରଖିଥିବା ଶୁଭକାନ୍ତର ପ୍ରତିଛବିରେ ସେ ଅଳନ୍ଧୁ ଟିକେ ଜମିବାକୁ ଦେଉ ନଥିଲା । ସେ ଆତ୍ମ ସମୀକ୍ଷା କରୁଥିଲା ।

ଶୁଭକାନ୍ତ- ପ୍ରତି ହୃଦୟର ଗଭୀର ଆବେଗିକ ଆକର୍ଷଣକୁ ଯଦି ନୃତାତ୍ତ୍ୱିକ ଭାଷାରେ ବ୍ୟଭିଚାର କୁହାଯାଏ, ପାପର ଆଖ୍ୟା ଦିଆଯାଏ, ଅବୈଧ ବୋଲି ଅଙ୍ଗୁଳି ନିର୍ଦ୍ଦେଶ କରାଯାଏ ସାଗରସହ ଚନ୍ଦ୍ରର ସମ୍ପର୍କ ଅବୈଧ ତାର ଚାନ୍ଦିନୀ ଅବୈଧ, ତରଙ୍ଗ ଅବୈଧ, ସମୁଦ୍ରର ତୀବ୍ର ଆକର୍ଷଣରେ ହଜାର ହଜାର ମାଇଲ୍ ଅତିକ୍ରମ କରି ଆସୁଥିବା ତଟିନୀ ପାପୀୟସୀ, ଏ ସମୁଦ୍ର ବ୍ୟଭିଚାରୀ, ଜ୍ୟୋସ୍ନା ଚର୍ଚ୍ଚିତ ଆକାଶଟା ଏକ ଟିଟ୍ଟିଭ ଚଢ଼େଇର ଅଶାନ୍ତ ଚିତ୍କାରରେ ଫାଟି ପଡୁଥିଲା ଯେମିତି । ଏକ ଅବ୍ୟକ୍ତ ଅନ୍ତର୍ଦାହରେ ଚୁପ୍‌ଚାପ୍ ଉଠି ଚାଲିଗଲା ଶତରୂପା ।

ତାପରେ ଦୀର୍ଘ ଏକବର୍ଷର ଉତ୍ପୀଡ଼କ ବ୍ୟବଧାନ । ଏ ଭିତରେ ଶୁଭକାନ୍ତର ବଦଳି ହୋଇଯାଇଥିଲା ଅନ୍ୟ ଏକ ସହରକୁ ।

ଏଇ ଏକ ବର୍ଷ ଭିତରେ ଗୋଟିଏ ମୁହୂର୍ତ୍ତ ପାଇଁ ବି ନିଷ୍ପ୍ରଭ ହୋଇନଥିଲା ଶତରୂପାର ସ୍ମୃତି ତା ହୃଦୟ ଦୀପାଳିରୁ ।

କେମିତି କଟିଥିବ ଏଦିନ ଗୁଡ଼ାକ ଶତରୂପାର ! ନିଜକୁ ନିଜେ ପ୍ରଶ୍ନ କରୁଥିଲା ଶୁଭକାନ୍ତ । କି ଉପହାର ସେ ଦେବ କଠିନ ଅଗ୍ନିପରୀକ୍ଷାରୁ ଉତ୍ତୀର୍ଣ୍ଣ ଶୁଦ୍ଧ ସୁବର୍ଣ୍ଣ ପରି ଝଟକୁ ଥିବା ସଂଯମ ମଣ୍ଡିତ ବ୍ୟକ୍ତିତ୍ୱ ନା ସର୍ବଗ୍ରାସୀ କାମନା ଅଗ୍ନିର ଅଶାନ୍ତ କ୍ଷୁଧାରେ ଦଗ୍ଧିଭୂତ ତାର ଅସହାୟ ଅସ୍ତିତ୍ୱକୁ ?

ଡିସେମ୍ବର ମାସର ଶୀତ ବତୁରା ସକାଳକୁ ଶତରୂପାର ଫୋନ୍ ଉଷ୍ମ ଉତ୍ତେଜନାରେ ଭରିଦେଲା । ଶତରୂପାର ଆହ୍ୱାନ ଶୁଭକାନ୍ତ ପାଇଁ ସବୁଦିନେ ଏମିତି । ତରବର ହେଇ ସୁଟ୍‌କେଶ ସଜାଡ଼ିବାକୁ ବାହାରିପଡ଼ିଲା । ତାକୁ ଧରିବାକୁ ହେବ କାଲ୍‌କାଟା ପୁରୀ ଏକ୍ସପ୍ରେସ୍ ଟ୍ରେନ୍ ।



# ବୁଟି ବୁଢ଼ୀ

ସତ କହୁଚି ବୁଟିବୁଢ଼ୀ ଯଦି ଆଜି ବଞ୍ଚିଥାଆନ୍ତା, ମୁଁ ଏମିତି ସର୍ବସମକ୍ଷରେ ତାକୁ ବୁଟି ବୁଢ଼ୀ ବୋଲି କହିବାର ସାହସ ଆଦୌ କରିନଥା'ନ୍ତି । ତାପାଇଁ 'ବୁଟି' ଆଉ 'ବୁଢ଼ୀ' ଦୁଇଟା ଯାକ ଶବ୍ଦ ଥିଲା ଅତ୍ୟନ୍ତ ଅସହ୍ୟ । ତା ଆଗରେ ତାକୁ କେହି ବୁଟି ବୁଢ଼ୀ ଡାକିଦେଲା ତ ସେଦିନ ସେଇ ହତଭାଗାଟିର ଚଉଦପୁରୁଷ ଉଦ୍ଧାର ହୋଇଗଲା ବୋଲି ଜାଣ ।

ସିଏ ଧନୀ ମାନୀ, ଗରିବ ମାତବର, ପୁରୁଷ ସ୍ତ୍ରୀ ପିଲାବୁଢ଼ା କି ଦିଣ୍ଡା ଭେଣ୍ଡା ଦିଶାରୀ ବାରିକ ଯିଏ ହେଉନା କାହିଁକି ସେ କାହାରି ମହତ ରଖୁନଥିଲା । ବେଙ୍କୁଣୀ ମାନଙ୍କ ଭଳି ଗାଁ ଦାଣ୍ଡରେ ନାଚି ନାଚି କହୁଥିଲା– ଗାତଶୁଆ, ମରୁଡିଆ, ବାଘ ଖିଆମନ୍....ଅଣ୍ଡିରାଖାଇ, ପିଲା ଟୋକୀ ଖାଇମନ୍, ତମର ଆୟାବୁବାମାନେ ମତେ ନାଁ ଦେଇଥିଲେ ବୁଟି ? ....ବୁଟିବୁଢ଼ୀ .... ? ତମେମାନେ ଆଉ ବୁଢ଼ାବୁଢ଼ୀ ହବନାଇଁ ? ଏମିତି ଦିଣ୍ଡା ଭେଣ୍ଡା ହେଇ ରହିଥିବ ମୁଁଇଁ କାକୁଡ଼ି ନା କୁମୁଡ଼ା ହେଇଛି, ବୁଢ଼ା ହେଇଯିବି ବୁଢ଼ୀ ହେଇଯିବି ? ତମକୁ ସାପ ଖାଉ । କିଡ଼ା ପଡୁ ତମ ତୁଣ୍ଡରେ । ତୁମା ଖାଉ ତମକୁ । ମୋ

ବାପା ମାଆ ନାଁ ଦେଇଥିଲେ ସୋ'ଦରା । ନାଟଗୁରୁ ମତେ ଡାକୁଥିଲା ସୁଭଦ୍ରା । ତମମାନଙ୍କ ତୁଣ୍ଡରେ କ'ଣ କି ବଡ଼ରୋଗ ହେଇଚି ମତେ ଡାକୁଚ ବୁଟିବୁଢ଼ୀ ?

ପ୍ରକୃତରେ ଯେ ସେ ବୁଟି ନଥିଲା କି ବୁଢ଼ୀ ନଥିଲା ଠିକ୍ ସେୟା ନୁହେଁ, ସେ ବୁଟିଥିଲା ଆଉ ବୁଢ଼ୀ ବି । ତଥାପି ତାକୁ ବୁଟିବୁଢ଼ୀ କହିଲେ ସେ ଅଜ୍ଞାନ ହୋଇଯାଏ । ଯୋଉଦିନ ସେ ଏମିତି ମାତେ, ସେଦିନ ଗାଁଟିସାରା ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ କେହି ତା'ସଙ୍ଗେ ପାଟି ଖଣ୍ଡକୁ ଦି'ଖଣ୍ଡ କରନ୍ତି ନାଇଁ । ଏସବୁ ସତ୍ତ୍ୱେ ବୁଟିବୁଢ଼ୀ ଓରଫ ସୋ'ଦରା ଓରଫ ସୁଭଦ୍ରା ଗାଁଟା ଯାକର ଅତି ଆପଣାର । ଗାଁ ଶେଷ ମୁଣ୍ଡରେ ଛୋଟିଆ ଏକଣା ଖପରଲି ଘରଟି ତାର ବସା । ପୋଢ଼ା ହରିଡ଼ା ଓ ପାଳ ପାଉଁଶ ଗୋବର ମିଶେଇ ନିଚିପର କରି ଏମିତି ଲିପାପୋଛା କରି ରଖିଥାଏ ଯେମିତି ମାଛି ଖସିପଡ଼ିବ ତା ମାଟି ପିଣ୍ଡା ଓ କାନ୍ଥରୁ । କବାଟ ବୋଲି ଯାହା ଖଣ୍ଡେ ଟିଣ । ସରୁ ତାର ଖଣ୍ଡେ ଦୁଇ ପରସ୍ତ ହୋଇ ଶିକୁଳି ଭଳି କାମ ଦେଇଥାଏ । ସେଇଟିକୁ ଟାଣି ଆଣି ଦୁଆର ବନ୍ଧରେ ଦୁଇପ୍ରସ୍ତ ହେଇ ପିଟା ହେଇଥିବା ଟାଣୁଆ ତାରଖଣ୍ଡେରେ ଗଳେଇଦେଇ ଛୋଟିଆ ତାଲାଟିଏ ଝୁଲେଇଦିଏ । ସେଇ ବଡ଼ି ଭୋରରୁ ସେ ବାହାରିଆସେ ଯେ ଦିନସାରା ସେ ଘର ଆଉ ଖୋଲେ ନାହିଁ । ପୁଣି ସଞ୍ଜ ହେଉ ନହେଉଣୁ ସେ ଫେରିଆସେ ଏହି ଏକଣା ଟୁଙ୍ଗୀକୁ । ରାତିରେ ଯିଏ ଯେତେ ଡାକିଲେ ବି ସେ ଆଉ କବାଟ ଖୋଲେ ନାହିଁ କି ବାହାରକୁ ବାହାରେ ନାହିଁ ।

ଛୋଟିଆ ମଣିଷଟିଏ ସିଏ । ହାଡ଼ମାଉଁସ ମିଶି ମେଞ୍ଚାଏ ହେବନି । ଉଚ୍ଚତା ସେଇ ଚାରିଫୁଟ ପାଖାପାଖି । କଳାମୁଚୁମୁଚୁ ଚେହେରା କୁଞ୍ଚକୁଞ୍ଚିଆ ବାଳ । ଆଖି ଦୁଇଟି ଗୋଲ । ପେଚା ଆଖିପରି । କଥାଗୁଡ଼ାକ ଟାଇଁ ଟାଇଁ । ସେଇ ଟାଇଁ ଟାଇଁ କଥା ସାଙ୍ଗକୁ ଦୁନିଆ ଯାକର ଢଗଢମାଳି । ବାସନ ମାଜୁ ମାଜୁ,ବଡ଼ି ପାଇଁ ବିରି ବାଟୁ ବାଟୁ, ଚାଉଳ ପାଛୁଡୁ ପାଛୁଡୁ ସେ ପାଟି ଖୋଲିଲା ତ କଥାକୁ କଥା ଗଛେଇ ଧାଡ଼ି ଧାଡ଼ି ବଗ ଉଡ଼ିଲାଭଳି ଲମ୍ବେଇ ଦିଏ ଦେଶୀୟା ନାଟର ଗୀତ । ସ୍ୱର ତାଳ ଲୟ ଯିଏ ଯୁଆଡ଼େ ଯାଉ ପଛେ, ସିଏ ଗାଇଚାଲେ ଅନର୍ଗଳ । ପେଚା ପଇଶୁ, ସୁଭଦ୍ରାହରଣ, ଅଭିମନ୍ୟୁ ବଧ ନାଟର ଗୀତ ସବୁ ତା ଜିଭ ଅଗରେ । ଗୀତ ଗାଉ ଗାଉ ଏକ ମହୁଲ ଫୁଲିଆ ମାଦକତାରେ ସେ ଭୁଲି ବସେ ନିଜକୁ । ଚାଉଳ କୁଲାଟା ହେଉ କି ଝାଡୁ ମୁଠାଟା ହେଉ, ଢାଳ ଗିନାଖଣ୍ଡେ ହେଉ କି ଗାମୁଛା ଖଣ୍ଡେ ହେଉ ଡାହାଣ ହାତରେ ଟେକିଧରି ଅଣ୍ଟାଟାକୁ ଅଳ୍ପ ଆଗକୁ ଝୁଙ୍କେଇ ବାଁ ହାତଟା ପିଠି ପଟକୁ ଦେଇ ଚଇତି ପବନରେ ଶାଳ-

ଫୁଲ ଘୂରି ବୁଲିଲାପରି ସେ ଘିରି ଘିରି ବୁଲିଯାଏ । କାମ ପାଇଁଟି କଥା ଭୁଲିଯାଏ । ଦେଖଣାହାରୀ ତାଳି ମାରନ୍ତି । ବାହାବା ଦିଅନ୍ତି । ସିଏ ଆହୁରି ଉତ୍ସାହିତ ହୋଇଯାଏ । ପାଦର ଗତି ଆହୁରି ବଢ଼ିଯାଏ । କଣ୍ଠର ସ୍ୱର ଲମ୍ୱିଯାଏ- ଏମିତି ରଙ୍ଗ ରସ ହେଉ ହେଉ ପାଇଟି ତିଆରିଥିବା ସାଉକାରିଣୀ ତାଗିଦ୍ କରେ ଏମିତି ନାଟ କରୁଥିବୁ ନା ମୋ ପାଇଟି କରିବୁ ?

ସୁଭଦ୍ରା ପଦ ଯୋଡ଼େ-

ଏ ନନି ବିହାରୀ ପାନି କାଏ ମନ୍ତର କଲା । ବୁଢ଼ାବୁଢ଼ୀ ଭେଣ୍ଡିଆ ପିଲା ସବ୍‌କେ ନସେଇଦେଲା- ସାହୁକାରିଣୀ କହେ- ହଁ ହଁ, ରଖ୍ ତୋ ବିହାରୀ ପାନି । ଘରେ ଟୋପାଏ ପାଣି ନାହିଁ । ଯା ଯା ମନ୍ଦିର କୂଅରୁ ପାଣି ଦି' ହାଣ୍ଡି ଆଣି ଦେ ।

ସୁଭଦ୍ରା ଓରଫ୍ ବୁଟିବୁଢ଼ୀ ମୁଣ୍ଡରେ ବାହିନୀ କନା ରଖି ଗୋଟିଏ ହାଣ୍ଡି ମୁଣ୍ଡରେ ତ ଆଉ ଗୋଟିଏ ହାଣ୍ଡି କାଖରେ ଧରି ଦେଉଳ କୂଅ ଆଡ଼େ ମୁହାଁଏ । ଆସର ଭାଙ୍ଗେ । ଆଶ୍ୱସ୍ତ ହୁଏ ମାଲିକାଣୀ ।

ସେ ଶ୍ରୀଅକ୍ଷର ବିବର୍ଜିତା । ସବୁ ଦେଶୀୟାଣୀଙ୍କ ପରି ନାଚଗୀତରେ ତାର ସଉକ । ଅନ୍ୟ ଦେଶୀୟାଣୀ ଓ ତା ଭିତରେ ଫରକ୍ ଏତିକି ଯେ ଦେଶୀୟା ଭାଷାର ଗୀତସାଙ୍ଗକୁ ଦେଶୀୟା ନାଚର ଗୀତ ସବୁ ସେ ନିର୍ଭୁଲ କରି ଘଣ୍ଟାଘଣ୍ଟା ଗାଇପାରେ । ଏଇ ନାଚଗୀତ ପାଇଁ ତ ତାର ଜୀବନ ଯୌବନ ସ୍ୱପ୍ନ କଳ୍ପନା ସବୁକିଛି ପାହାଡ଼ି ଝରଣା ଭଳି ବାଟହୁଡ଼ି ଏଣେତେଣେ ବିଛାଡ଼ି ହୋଇଗଲା । ସିଏ ନା ପାଇଲା ସାଗରର ସନ୍ଧାନ ନା ଅଜଣା ରାସ୍ତାରେ ହଜିଯିବାର ମାଦକତା । ସିଏ ହଜିଗଲା ସତ କିନ୍ତୁ ସେ ହଜିବାର ଏକ ଦାରୁଣ ନିଃସଙ୍ଗତା ତାକୁ ଯନ୍ତ୍ରଣା ଜର୍ଜରିତ କରିଦେଲା । ରାତିର ନିଶୁନ୍ ପହରରେ, ଯେତେବେଳେ ସାରା ଗାଁଟା ନିରବୀଯାଏ, ଛିଣ୍ଡା କନ୍ଥା ଖଣ୍ଡକରେ ଶୋଇ ରହି ସିଏ ପଛକଥା ଗୁଡ଼ାକ ସେମିତି ଘାଣ୍ଟୁ ଘାଣ୍ଟୁ କେତେବେଳେ ଛୁଟ୍‌କିନି ନିଦ ଆସି ଯାଏ ତ ପୁଣି କେବେ କେବେ ସାରାରାତି ଅନିଦ୍ରା । ତା ଆଖି ଆଗରେ ନାଚିଯାଏ ତା ପିଲା ବେଳର କଥା ।

ସାଉକାରଠୁଁ କାଢ଼ିଆ ଟଙ୍କାନେଇ ତା ଭାଇ ପଦଲମ୍ ଗଲା ଦାଦନ । ସେଠି କୁଆଡ଼େ ଅଧିକ ପଇସା, ଖାଇବା ପିଇବା ସବୁ ବୁଝିବ ମାଲିକ । ପଦଲମ୍ ସାଙ୍ଗକୁ ଆଉ କେତେଟା ଭେଣ୍ଡିଆଙ୍କ ପାଇଁ ବି ଟଙ୍କା ଦେଲା ସାଉକାର । ଗାଡ଼ିକରି ଜୟପୁର ପଠେଇଦେଲା । ସେଇଠୁ ସେମାନେ ଗଲେ ଆନ୍ଧ୍ରା । ତା ବାପା ସେଦିନ ସଅଳସଅଳ ଫେରିଥିଲା ସାଉକାର ଘରୁ । ଆସିଲାବେଳକୁ ତା ଗୋଡ଼ ଟଳମଟଳ

ହେଉଥିଲା । ପାଦ ତିନିଠେଇଁରେ ପଡୁଥିଲା । ଖୋସଣି ଖୋଲି ତା ହାତକୁ ଶହେଟଙ୍କା ନୋଟ୍‌ଟିଏ ବଢ଼େଇଦେଇ କହିଲା ରଖିଥା । ସାଉକାର ଦେଇଚି । ମଣ୍ଡେଇ ବଜାରରୁ ତୋ ପାଇଁ ଖଣ୍ଡେ ରଙ୍ଗଶାଢ଼ୀ ଆଣିବୁ । ଭାରି ମାନିବ ତୋ ଦିହକୁ । ସିଏ ହାତ ବଢ଼େଇ ବୁଆ ହାତରୁ ଟଙ୍କା ନେଇଥିଲା ସିନା, ଭାଇଟା ଯେ ଦାଦନ ଖଟିଗଲା ଭାବି ମନଟା ବିଷପିତା ହେଇଗଲା । ସେଇଦିନଠୁଁ ସେ ଗଲା ଯେ ଗଲା ତାର ଆଉ ଖବର ନାହିଁ କି ଅନ୍ତର ନାହିଁ । ପଇସା ଲୋଭରେ ଗାଁ ଛାଡ଼ି ଯାଇଥିବା ଭେଣ୍ଡିଆ ଜୁଆନ୍‌ଗୁଡ଼ାକ ଫେରିଲେ ହାଡ଼କଙ୍କାଳ ଧରି । ସବୁରି ଆଖିରେ ପୋଷେ ପୋଷେ ଚାଉଳ ଧରିବ । ହନୁହାଡ଼ ବାହାରି ପଡ଼ିଛି । ସମସ୍ତେ ଦିଶୁଛନ୍ତି ନଅଙ୍କିଆ । କିନ୍ତୁ ପଦଲମ୍ ଫେରିଲା ନାହିଁ । ଭଲପିଲାଟା ବୋଲି କୁଆଡ଼େ ମାଲିକ ତାକୁ ଅଟକେଇ ରଖିଦେଲା । ଖାଇବା ପିଇବାରେ ହଇରାଣ ହରକତ କରିବାରୁ, ପଇସାପତ୍ର ଠିକ୍ ନଦେବାରୁ ଅନ୍ୟମାନେ ପାଟିତୁଣ୍ଡ କଲେ । ଅସ୍ତବ୍ୟସ୍ତ ହୋଇ ମାଲିକ ସେମାନଙ୍କୁ କେବଳ ଗାଡ଼ିଖର୍ଚ୍ଚ ଧରେଇ ଗାଁକୁ ପଠେଇଦେଲା । ଭୋକ ଉପାସରେ କଦଳୀଚୋପା ଖାଇ ଅଧାବାଟ ଗାଡ଼ିରେ ତ ଅଧାବାଟ ଚାଲି ଚାଲି ସେମାନେ ଆସି ଗାଁରେ ପହଞ୍ଚିଲେ । ପଦଲମ୍ ରହିଗଲା ଯେ ଗଲା । କେଜାଣି ଆଉ ଫେରିବ କି ନା ।

ସାଉକାର ଟଙ୍କାର କଳନ୍ତରବଢ଼ିଲା । ବୁଢ଼ାବାପା ଆଉ ଖଟିପାରିଲା ନାହିଁ । ଖିଆପିଆ ଛାଡ଼ିଦେଲା କେତେବେଳେ ସୁଭଦ୍ରା ମାଣ୍ଡିଆ ପେଜଟିକେ କି କନ୍ଦାସିଝା ଖଣ୍ଡେ ଖୁଆଇଲା ତ ଆଉ କେତେବେଳେ ସାଉକାର ଭାଟିରୁ ତଣ୍ଟି ପର୍ଯ୍ୟନ୍ତ ପିଇ ସେ ବାଟରେ ଘାଟରେ ପଡ଼ି ରହିଲା । ଦିନରାତି ତାପାଇଁ ସମାନ ହେଲା । ସୁଭଦ୍ରାକୁ ଗୋତି ଖଟିବାକୁ ହେଲା ସାଉକାର ଘରେ । ନହେଲେ ପଇସା କେମିତି ସୁଝାହେବ ? ପାଞ୍ଚ ବରଷ ଖଟିବାକୁ ହେବ । ତେବେ ଯାଇ ସୁଧମୂଳ ଆଦାୟ ହେବ । କଥା ଛିଣ୍ଡିଲା– ସେ ବର୍ଷକୁ ଦୁଇଖଣ୍ଡ ନୂଆଶାଢ଼ୀ ଆଉ ଦୁଇଖଣ୍ଡ ପୁରୁଣା ଶାଢ଼ୀ ପାଇବ । ଖାଇପିଇ ରହିବ । ବୁଢ଼ାବାପାକୁ ଭାତିଆ ଆଉ କେବେ କେବେ ମଦପାଣି ଟିକେ ମିଳିବ । ସେ ଆଉ ପଇସା ଦାବୀ କରିବ ନାହିଁ । ବନ୍ଧା ପଡ଼ିଗଲା ସୁଭଦ୍ରା । ସାଉକାର ଜମିରେ ଭୂତିକଲା । ଆଖୁ କାଟିଲା, ମକା ଛଡ଼େଇଲା, ଗୁଡ଼ ରାନ୍ଧିଲା, କାନ୍ଦୁଲ ବିରି ମାଣ୍ଡିଆ ପାଛୁଡ଼ିଲା । ଗୁହାଳ ଗୋବର ଉଠେଇଲା । ଘର ଦ୍ୱାର ଲିପାପୋଛା କଲା । ବାସନ ମାଜିଲା, ଲୁଗାସଫାଲା, ଦେହମୁଣ୍ଡ ହେଲେ ସାହୁକାର ଓ ସାହୁକାରଣୀର ଗୋଡ଼ହାତ ଚିପିଦେଲା । ସାଉକାର ଗାଧୋଇବା ପାଇଁ କୂଅରୁ ବାଲ୍‌ଟି ବାଲ୍‌ଟି ପାଣି କାଢ଼ିଲା ।

ସୁରୁଜ ନଉଠୁଣୁ ସିଏ ଉଠି ଘର କାମରେ ଲାଗିପଡ଼ିଲା ଯେ ଘରଲୋକ ବିଛଣାକୁ ଗଲାପରେ ରାତି ଅଧ ତିନି ପହରେ କୋଉଠି ଟିକେ ଗଡ଼ି ପଡ଼ିଲା । ତଥାପି ତା ପଇସା ସୁଝିଲା ନାହିଁ କି ତାକୁ ମୁକ୍ତି ମିଳିଲା ନାହିଁ ।

ମଣ୍ଡେଇରେ ବାଲିଫୁଲ ବାନ୍ଧିଥିବା ଗୁରୁବାରୁ ଆଉ କେତେଦିନ ଠେଙ୍ଗୁଆ ହେଇ ତାକୁ ଜଗିବସିଥା'ନ୍ତା ? ଏବର୍ଷ ମଣ୍ଡେଇରେ ସିଏ ଲଛନ୍ଦୀକୁ ନେଇ ଘର ସଂସାର କଲା । ସୁଭଦ୍ରାର ଭାରି ମନ କଷ୍ଟ ହେଲା । ଖାଇବାକୁ ରୁଚିଲା ନାହିଁ । କାମ ଦାମରେ ମନ ଲାଗିଲା ନାହିଁ । ନିଦ ହେଲା ନାହିଁ ରାତିରେ । ପୁଣି ମନକୁ ବୁଝେଇଲା । ସାଉକାରର ପାଉଣା ନତୁଟିବା ପର୍ଯ୍ୟନ୍ତ ତାକୁ ସପନ ଦେଖିବା ମନା । ଭାଇଟା ତ ଫେରିଲାନି । ବାପଟା ବି ସାଉକାରଭାଟିରୁ ମଦ ପିଇ ପିଇ ମୂଳ କଳନ୍ତର ବଢ଼େଇ ଚାଲିଲା । ତାକୁ ଚାରିଆଡ଼ ଅନ୍ଧାର ଦିଶିଲା ।

ସେଇ ଅନ୍ଧାର ଭିତରେ ଦିନେ ସିଏ ଅନୁଭବ କଲା ମଣିଷଖିଆ ବାଘଟାଏ ତା ରକତ ମାଉଁସ ପଳ ପଳ କରି ଖାଇବାପାଇଁ ଟାକି ବସିଛି । ସିଏ ପ୍ରତିବାଦ କଲା । ବାଘର ବଳବପୁ, ମୁନିଆଁ ନଖ ଦାନ୍ତ, ତାର ହେଣ୍ଡାଳ ପାଖରେ ତା ପ୍ରତିରୋଧ ଊଣା ପଡ଼ିଗଲା । ସବୁଦିନ ରାତିର ଅନ୍ଧାରରେ ତା ସୁଆଦିଆ ରକତ ମାଉଁସରେ ଭୋଜି କଲା ସେ ଭୋକିଲା ପଶୁଟା । ଦେହ ସୁହା ହୋଇଗଲା ସୁଭଦ୍ରାର । ସେଇ ବୁଢ଼ା ବାଘର ସନ୍ତକ ରହିଲା ତା ପେଟରେ । ସେ ସାଉକାରିଣୀ ହେଲା ନାହିଁ ସିନା ସାଉକାର ପିଲାର ମାଆ ହେଇ ପୋଷା କୁତୀ ପରି ପଡ଼ିରହିଲା ସାଉକାର ଘରେ ।

ସିଏ କଡ଼ ଲେଉଟାଏ । ଅତୀତର ଲିଭିଲା ପାଉଁଶ ଭିତରୁ ଦିକି ଦିକି ଜଳୁଥିବା ସ୍ମୃତିର ନିଆଁ ଝୁଲ ଟିକେ ତା ସମଗ୍ର ସତ୍ତାକୁ ଆବେଗାପ୍ଳୁତ କରିଦିଏ । ସିଏ ଅସ୍ତବ୍ୟସ୍ତ ହୋଇପଡ଼େ । ଶୋଇଲା ବିଛଣାରୁ ଉଠିବସେ । ତାର ହଜିଲା ଦିନଗୁଡ଼ାକ ତାକୁ ଦାନ୍ତ ଦେଖେଇ ଖତେଇ ହୁଅନ୍ତି । ତା କର୍ମ ଅକର୍ମର ହିସାବ ମାଗନ୍ତି । ତା ସ୍ନେହ ସରାଗ ଅନୁରାଗ ବିରାଗର ତର୍ଜମା କରନ୍ତି । ସେ ନିଜକୁ ତଉଲି ବସେ । ତା ଭଲପାଇବାର ସୀମା ସରହଦ ତା ଚାହିଁବା ନଚାହିଁବାର ପରିଧି ଜୀବନ ମରଣର ନକ୍ସା ସବୁକିଛି ବିଭସ୍ତ ହୋଇପଡ଼େ । ତା ଜୀବନ ଦର୍ଶନର ସବୁ ଜଟିଳ ଅଙ୍କ କଷୁ କଷୁ ଅବଶେଷ ଯାହା ରହେ ତାହା କେବଳ ଏକ ଭୂଇଁଫଟା ନିଷ୍ଫଳ ଭବିଷ୍ୟତ । ସେଠି ଆଉ ମଳୟ ଆସିବାର ନାହିଁ କୃଷ୍ଣଚୂଡ଼ା ଫୁଟିବାର ନାହିଁ କି କୋଇଲି ରାବିବାର ନାହିଁ । ପ୍ରଚଣ୍ଡ ନିଦାଘର ନିଷ୍ଠୁର ପଦଧ୍ୱନି । ତଥାପି ଜୀବନ ଜୀଇଁବାକୁ ହୁଏ ।

ସୁଭଦ୍ରା ଚାହିଁଥିଲା ଜୀବନ ବଞ୍ଚିବାକୁ । ବାଘର ହେଣ୍ତାଳରେ ନୁହେଁ । ଫୁଲର ଫଗୁଣରେ ସେ ନିଜକୁ ହଜେଇ ଦେବାକୁ ଚାହୁଁଥିଲା । ଝୁରି ହେଉଥିଲା ଜୀବନକୁ । ବଞ୍ଚିବାର ମାଦକତାକୁ । ଜନ୍ମକଲା ଛୁଆ ତାକୁ ଆଉ ଆକର୍ଷିତ କରି ରଖିପାରିଲା ନାହିଁ । ତା ଟୋକୀବେଳେ ଚଇତି ପରବ, ମଣ୍ତେଇ, ପୁଷ୍ ପୁନେଇଁରେ ଭଲ ନାଚ ଓ ଗୀତ ଗାଉଥିବା ସୁଭଦ୍ରାର ସେଇ ଝୁରିହେବାର ମୁହୂର୍ତ୍ତମାନଙ୍କୁ ନାଚଗୁରୁ ଚଇତନର ନାଚଗୀତ ଉଚାଟ କଲା । ଅଧା ବୟସରେ ସିଏ ବାଟ ହୁଡ଼ିଲା । ସତକୁ ସତ ସିଏ ପଡ଼ିଗଲା ନାଚଗୁରୁ ଚଇତନ ବୈରାଗୀର ପ୍ରେମରେ ।

ସୀତା ହରଣ ନାଟରେ ଯେତେବେଳେ ମାଇକିଟିଏ ଧରି ଚଇତନ ବୈରାଗୀ ଗଳାଝାଡ଼ି ରାତିର ଛାତିକୁ ଥରେଇ ସୀତାଙ୍କ ବିରହରେ ବ୍ୟାକୁଳ ହୋଇ ଗଛଲତା ପାହାଡ଼ ପର୍ବତ ନଦୀ ଝରଣା ଯକ୍ଷ କିନ୍ନରକୁ ସୀତାଙ୍କ ସନ୍ଧାନ ପଚାରୁଥିବା ରାମଙ୍କ ପାଇଁ ଗାଏ- ''ହେ ପ୍ରାଣ ସହି- ମୋତେ ଛାଡ଼ିଗଲୁ କାହିଁ ପାଇଁ'' ସୁଭଦ୍ରା ନାଚଗୁରୁ ସଂପର୍କରେ କିଛି ନଜାଣି ବି ଭାବେ, ନାଚଗୁରୁଟା ସତରେ ଭାରି ଏକୁଟିଆ । ବିରହୀ ରାମଙ୍କ ବାହାନାରେ ସେ ନିଜ ଗୀତ ଗାଉଚି । ତା ଜୀବନରେ ସିଏ କାହାକୁ ହରେଇ ଦେଇଚି, କିଏ ତାକୁ ଛାଡ଼ି ପଳେଇଚି, ସେ ସେୟାକୁ ହିଁ ଖୋଜୁଛି । ଖୋଜି ଖୋଜି ନୟାନ୍ତ ହେଉଚି । ସେ ପେଣ୍ତାଲ ଉପରେ ରାମ ଭୂମିକାରେ ଅଭିନୟ କରୁଥିବା ଲୋକଟିକୁ ନଦେଖି ଶୋକବିହ୍ୱଳିତ ନାଚଗୁରୁର କାନ୍ଦୁରା ମୁହଁ, ଥରିଲା କଣ୍ଠ, ଆଖିରୁ ଧାର ଧାର ବୋହି ଯାଉଥିବା ଲୁହକୁ ଦେଖେ ।

ଆଃ- କେଡ଼େ ଦୁଃଖୀଟା ଏ ନାଚଗୁରୁ । ଦରବୁଢ଼ା ଚଇତନ ବୈରାଗୀ ତା ଆଖିକୁ ଭାରି ସୁନ୍ଦର ଦିଶେ । ତା କଳା ମୁଚୁ ମୁଚୁ ବାବୁରୀ ବାଳ, ହାରମୋନିୟମ ତବଲା ତାଳରେ ମୁଣ୍ତକୁ ଏପଟ ସେପଟ କରି ଗାଇବାର ଭଙ୍ଗୀ ସୁଭଦ୍ରାକୁ ଅନ୍ୟ ମନସ୍କ କରିଦିଏ । ସେ ବିଗଳିତ ହୋଇପଡ଼େ । ତା ଦୁଃଖୀ ମନଟାକୁ ଟିକେ ସାନ୍ତ୍ୱନା ଦେବାପାଇଁ ତାର ଇଚ୍ଛା ହୁଏ । ତା ଆଖିରୁ ଲୁହ ପୋଛି ଦେବାପାଇଁ ସେ ମନ କରେ । ତା ହଜିଲା ସୀତାକୁ ବଣପାହାଡ଼ ଝୋଲା ଡଙ୍ଗର ସବୁଆଡ଼େ ଖୋଜି ଖୋଜି ବାହାର କରି ଆଣନ୍ତା । ଆଉ ଯଦି ନ ପାଆନ୍ତା ନିଜେ ସୀତା ବେଶ ହେଇ କହନ୍ତା- ମୁଇଁ ତୋର ସୀତା, ମୁଇଁ ତୋର ସୀତା । ମୋତେ ନେ ତୋର ସାଙ୍ଗରେ ମୋତେ ନେ ।

ଦିନେ ସତକୁ ସତ ଗାଁରେ ରାଷ୍ଟ୍ର ହୋଇଗଲା ସୁଭଦ୍ରା ନାଚଗୁରୁ ସାଙ୍ଗରେ ପଳେଇଚି । ନାଚଗୁରୁ ଜାତିରେ ଡମ୍ବ ତାର ପୁଣି ସ୍ତ୍ରୀ ଅଛି । ଦିଣ୍ତା ଭେଣ୍ତିଆ ଟୋକୀ ପିଲା ଅଛନ୍ତି । ଛି- ଛି- ଜାତି ଗୋତ୍ର ବୁଡ଼େଇଲା ସୁଭଦ୍ରା । କୁଳ ହୁଡ଼ିଲା ବଅଁଶ ନାଁ ପକେଇଲା ଗାଁ ନା ପକେଇଲା ।

ସତକୁ ସତ ସେ କୂଳ ହୁଡ଼ିଥିଲା । ନା ଏ କୂଳର ହେଲା ନା ସେ କୂଳର । ମଝି ନଈରେ ଭାସିବା ପରି ପଚାଶ ବର୍ଷର ଦରବୁଢ଼ା ନାଟଗୁରୁ ଏଇ ଗାଁର ସେଇ ଟୁଙ୍ଗୀ ଘରେ ସୁଭଦ୍ରାକୁ ନେଇ ରହିଥିଲା କେତେଦିନ ।

ନାଟଗୁରୁ ତା ନାଟଦଳ ଧରି ଗାଁଠାରୁ ତିନିଗାଁ ପର୍ଯ୍ୟନ୍ତ ବୁଲେ । ଯେଉଁଦିନ କୋଉଠି କିଛି କାମ ନଥାଏ ସେଦିନ ସେ ସୁଭଦ୍ରା ପାଖକୁ ଆସେ । ରାତିରେ ହାରମୋନିୟମ୍ ଧରି ସେ ଡେରି ରାତି ପର୍ଯ୍ୟନ୍ତ ସୁର ତାଳ ଲୟର ଅଭ୍ୟାସ କରେ । ସୁଭଦ୍ରା ସେଇ ଟୁଙ୍ଗୀଟି ଭିତରେ ତା ସାମନାରେ ବସି ଗାଲରେ ହାତଦେଇ ଲୁଲୁ ଲୁଲୁ କରି ଅନେଇଥାଏ ହାରମୋନିଅମ୍‌ର ଧଳାଧଳା ଦାନ୍ତ ଉପରେ ନାଚ କରୁଥିବା ନାଟଗୁରୁର ଅଙ୍ଗୁଳିଗୁଡ଼ାକୁ ତ ପୁଣି ପାଟିଟାକୁ ଆଁ କରି ମୁଣ୍ଡକୁ ଏପଟ ସେପଟ ହଲେଇ ସୁନ୍ଦର ସ୍ୱର ଓ ତାଳ ଦେଇ ଗାଉଥିବା ମଣିଷଟାକୁ । ଏ ମଣିଷଟା ତାକୁ କୋଉ ଅଲଗା ରାଇଜର ମଣିଷ ପରି ଲାଗେ । ତୁମା ଦେବତା ପରି ଲାଗେ । ସେଇ ସୁର ଲୟ ତାଳ ଭିତରେ ସେ ହଜିଯାଏ । ଗୁଣୁଗୁଣୁ ହେଇପଦେ ଦି ପଦ ପାଳି ଧରେ । ନାଟଗୁରୁର ନିଘା ନଥାଏ ସିଆଡ଼େ । ସେ ଖୁସି ଥିଲେ ହାରମୋନିଅମ୍‌ରିଡ୍ ଉପରୁ ହାତ ଖସେଇ ଗୀତର ତାଳେ ତାଳେ ସୁଭଦ୍ରାର ଓଠଟାକୁ ଟିକେ ହଲେଇଦେଇ ତା ଗାଲଟାକୁ ଆଉଁସି ଦିଏ । ଦୁଇ ହାତରେ ଟୋଳି ଧରେ ତାକୁ । ସେ ଲାଜେଇଯାଏ । ତା ଚଉଡ଼ା ଛାତିରେ ମୁହଁ ଗୁଞ୍ଜି ତା କଣ୍ଠ ଦେଇ ବାହାରିଆସୁଥିବା ସବୁତକ ଗୀତର ସ୍ୱରକୁ ଆକଣ୍ଠ ପିଇଯିବାକୁ ତାର ଇଚ୍ଛା ହୁଏ । ସତକୁ ସତ ସିଏ ହଜିଯାଏ ତା ଭିତରେ । ଗଭୀର ଭାବରେ ଅନୁଭବ କରେ ତାକୁ । ଏଡ଼େ ବଡ଼ ମଣିଷଟା, ତାକୁ ଏତେ ଆଦର ଗେହ୍ଲା କରୁଚି । ତାକୁ ସପନ ଭଳି ଲାଗେ ସବୁ ।

ଏଇ ଅନୁଭବ ଭିତରେ ସେ ଭୁଲିଯାଉଥିଲା ନିଜ ସମାଜ ଛାଡ଼ି ସେ ଡମ୍ବ ନାଟଗୁରୁକୁ ଆପଣାର ମଣିଷ କରିଛି । ଜାତି ଭାଇଙ୍କର ନିନ୍ଦା ଅପମାନ ଗାଳି ଆଦି କିଛି ତାର ମନେ ପଡୁନଥିଲା । ବାହାର ଭିତର ସବୁ ତାର ସଂଗୀତ ମୟ ହେଇ ଯାଉଥିଲା । ସକଳ ପାପ ପୁଣ୍ୟର ଉର୍ଦ୍ଧ୍ୱକୁ ଉଠିଯାଉଥିଲା ତାର ଚେତନା । ତା କର୍ମ ଅକର୍ମର ବାଘ ତାକୁ ଆଉ ଦାନ୍ତ ଦେଖେଇ ଗୋଡ଼େଇ ଆସୁନଥିଲା । ସେ ପାଲଟି ଯାଉଥିଲା ଗୋଟିଏ ଭିନ୍ନ ମଣିଷ ।

ଏମିତି ଭିଜା ଭିଜା ସ୍ୱପ୍ନରେ ଜୀବନକୁ ଅନୁଭବୁଥିଲାବେଳେ ସୁଭଦ୍ରା ଦିନେ ଆବିଷ୍କାର କଲା ତା ଶିମୁଳିଫୁଲର ମହୋତ୍ସବରେ ନିଆଁ ଲାଗିଯାଇଛି । ତା ସୁଖର ସମୁଦ୍ର ଶୁଖିଯାଇଛି । ସେ ଅଲୋଡ଼ା ହେଇଯାଇଛି । ତାପାଖରୁ

ନାଚଗୁରୁର ଶୋଷ ମେଣ୍ଟିଯାଇଛି । ସେ ଯେମିତି ଆସିଥିଲା ସେମିତି ଚାଲିଗଲା । ସୁଭଦ୍ରା ମୁଣ୍ଡରେ ଆକାଶ ଛିଡ଼ିପଡ଼ିଲା । ଯାହାପାଇଁ ସିଏ ସବୁଛାଡ଼ିଲା, ଜାତିହାରି ଅଜାତିଆ ହେଲା, କୁଳକୁଟୁମ୍ବରେ ଅଛୁଆଁ ହେଲା ସିଏ ତାକୁ ପ୍ରତାରିତ କରିଛି । ତାକୁ ହୀନ କରି ରାସ୍ତାକଡ଼କୁ ଗଡ଼େଇ ନିଜ ସଂସାରକୁ ଫେରିଯାଇଛି । ତାର ପଛକୁ ଫେରିବାର ରାସ୍ତା ନାହିଁ । ଆଗକୁ ଅନ୍ଧାର । ସେଇ ଦିନଠୁଁ ଏଇ ଗାଁରେ ସେ ପଡ଼ିରହିଛି । ଏଇ ହେଇଚି ତା'ଘର । ଏଇଗାଁ ଲୋକ ହେଇଛନ୍ତି ତା' ଆପଣାର । ତା ପୁରୁଣା ସଂସାରକୁ ସେ ଭୁଲିଚି । ନାଚଗୁରୁକୁ ସେ ଭୁଲିଛି, ମାତ୍ର ନାଚଗୁରୁଠୁଁ ଶିଖିଥିବା ତା ନାଚଗୀତକୁ ଭୁଲିନି । ସେଇ ସାହାରାରେ ସିଏ ବଞ୍ଚିଛି , ହସିଛି, ନାଚିଛି, ଲୋକଙ୍କୁ ହସେଇଚି, ନଚେଇଚି, ଅତୀତ ଓ ଭବିଷ୍ୟତକୁ ଭୁଲି ସିଏ କେବଳ ପାଲଟିଯାଇଛି ବର୍ତ୍ତମାନର ମଣିଷ । ଏଇ ଗାଁର କାହାଣୀ ଓ କିମ୍ବଦନ୍ତୀ । ଲୋକେ କହନ୍ତି ସିଏ କୁଆଡ଼େ ପାଙ୍ଗିଣୀ । ରାତିର ନିଶୁନ୍ ପହରରେ ଡୁମା ଦେବତା ସହ କଥା ହେବାର କେହି କେହି ଶୁଣିଛନ୍ତି । ଚୁଲିରେ ନିଜ ଦୁଇଗୋଡ଼ ଭର୍ତ୍ତିକରି ଦେଇ ସେ ରାନ୍ଧେ । ସେ ଘର ଭିତରେ ସିଏ କାଉଁରି ହାଡ଼, ମଣିଷ ଖପୁରୀ, ବାଘ ନଖ, ସାଙ୍କୁଚ ଲାଙ୍ଗୁଡ଼ ଏମିତି କେତେ କ'ଣ ରଖିଛି । ମଶାଣି ପଦାରୁ ମଲାମଣିଷର ଆଖି ସବୁ ଗୋଟେଇ ଆଣି ମାଳ କରି ରଖିଛି । ନାଚଗୁରୁକୁ କାଉଁରୀ ହାଡ଼ ଶୁଙ୍ଘେଇ ତାକୁ ବଶ କରି ରଖିଥିଲା ।

ସାଉକାର ଘରୁ ଆସିଲାବେଳେ ସିଏ କୁଆଡ଼େ ତା ସିନ୍ଧୁକରୁ ପୁରୁଣା ସୁନା ଟଙ୍କା କେତେଟା ଲୁଚେଇ ଧରି ପଳେଇ ଆସିଥିଲା । ନାଚଗୁରୁକୁ ବି ସେଥିରୁ କେତେଟା ଦେଇଥିଲା । ଆଉ କେତେଟା ସିଏ ନିଜେ ରଖିଥିଲା । ସେଇ ସୁନା ଟଙ୍କା ସବୁ ନାଚଗୁରୁ ତାଠାରୁ ନେବାପାଇଁ ଚାହୁଁଥିଲା । ସେ ଏଥିରେ ରାଜି ନହେବାରୁ ସେ ତାକୁ ଛାଡ଼ି ପଳେଇଲା । ରାତି ହେଲେ ବୁଢ଼ୀ ସେଇ ଟଙ୍କା ସବୁ ଡିବରି ଆଲୁଅରେ ଗଣୁଥିଲା ।

ଏଇଗାଁର କାହାଣୀ କିମ୍ବଦନ୍ତୀ ସେଇ ବୁଟିବୁଢ଼ୀର ଦୁଇଦିନ ହେଲା ଭିତର ପଟୁ ବନ୍ଦ ଥିବା କବାଟକୁ ଶାବଳରେ ତାଡ଼ି ଖୋଲିଲାବେଳକୁ ବୁଢ଼ୀ ଆଉ ଜୀବନରେ ନଥିଲା । ଛିଣ୍ଡା କନ୍ଥାଟି ଉପରେ ମୁହଁମାଡ଼ି ପଡ଼ିଥିବା ତା ଶବ ସେତେବେଳକୁ ପଚି ଗନ୍ଧ ହେବାକୁ ଆରମ୍ଭ କଲାଣି ।

ଏହାପରେ ସମସ୍ତଙ୍କ ଭୟ ମିଶ୍ରିତ କୌତୂହଳ ଦୃଷ୍ଟି ଖୋଜି ହେଉଥିଲା ତାର ଭାନୁମତୀ ପେଡ଼ି, ଯେଉଁଥିରେ ଥିବ କାଉଁରୀ ହାଡ଼, ମଣିଷ ଖପୁରୀ, ମଣିଷ

ଆଖିର ମାଳ, ସାଙ୍କୁଚ ଲାଞ୍ଜ ଆଉ ପୁରୁଣା କାଳିଆ ସୁନାର ଅସରପି । ଜଣେ ଦୁଇଜଣ ସାହସୀ ଭେଣ୍ଡା ତା ଘରଯାକ ଦରାଣ୍ଡି ପକାଇଲେ । କୋଉଠି କିଛି ମିଳିଲା ନାହିଁ । ବୁଢ଼ୀର ତା ନିଜ ଲୋକ ସହ ସଂପର୍କ ନଥିଲା । କୋକେଇ ସଜାଡ଼ି ଗାଁ ଲୋକେ ଯେତେବେଳେ ଶବ ଉଠେଇଲେ, ତା ପେଟତଳୁ ବାହାରିଲା କୋଉ କାଳର ମଳି ମକନ୍ଦରା ସାତସିଆଁ କପଡ଼ାର ମୁଣିଟିଏ । ବଟୁଆ ଭଳି ହେଇଚି । ମୁହଁରେ ପ୍ଲାଷ୍ଟିକ୍‌ର ଦଉଡ଼ି ଖଣ୍ଡେ ଲାଗିଛି । ତା ଭିତରେ କାହିଁ କେତେବର୍ଷ ତଳର ମୀନାବଜାରରୁ ଉଠାହେଇଥିବା ପାଞ୍ଚ ଛଅବର୍ଷର ଶିଶୁର ଖଣ୍ଡେ ଫଟୋ । ଖଣ୍ଡେ ଦେଶୀଆନାଟର ବହି ଆଉ ଅଧା ପାରା ଛାଡ଼ିଯାଇଥିବା ଗୋଟିଏ କୋଣରୁ ଟିକେ ଭାଙ୍ଗିଯାଇଥିବା କାଚ ଅଇନାଟିଏ । ବୁଢ଼ୀର ସଂସାର ।



## ପଣ୍ୟ

ଡାକ୍ତର ପରିତୋଷ ନନ୍ଦ ପାନପତ୍ରୀର ଏକ୍ସରେ ରିପୋର୍ଟ ଭଲଭାବରେ ଦେଖିସାରି ବିରକ୍ତ ହେଇ ପଦଲମ୍ ଜାନୀକୁ କହିଲେ- ରୋଗୀର ମରିବା ସମୟ ହେଇଗଲେ ତମମାନଙ୍କର ଡାକ୍ତର କଥା ମନେପଡ଼େ । ଖବର ରଖିଛୁ ? କେବେଠୁଁ ତୋ ସ୍ତ୍ରୀର ଏ ଅବସ୍ଥା ? ପଦଲମ୍ ଦୁଇ ହାତଯୋଡ଼ି କହିଲା- ମାହାପୁର୍ ! ପାନପତ୍ରୀ ଭଲ ଥିଲା । ଗଲାବରଷ୍ ମଣ୍ଡେଇରେ ଖୁବ୍ ନାଚିଥିଲା । ସେଇଠୁ ଫେରି କି ଡୁମା ତାକୁ ଧଇଲା କେଜାଣି ବାବୁ, କେତେ ଦିଶାରୀ ଗୁଣିଆ, ଦେବତା ବଇଦ କଲି । ଦିନକୁ ଦିନ ପେଟ୍ ପେଟ୍ ହେଇ ପେଜ୍ ପାଣି ଛାଡ଼ିଦେଲା । ଗଲାବରଷ ମଣ୍ଡେଇକୁ ଏଣ୍ଡୁ ମଣ୍ଡେଇ, ବରଷେ ଗୋଟେକ୍ ହେଲା ଆଜ୍ଞା ।

ସବୁଆଡୁ ଆଶା ଭରସା ତୁଟେଇ ତାଙ୍କରି ଉପରେ ଗଭୀର ଆସ୍ଥା ପ୍ରକଟ କରି ଆସିଥିବା ପଦଲମ୍କୁ ସେ ଭଲକରି ଚାହିଁଲେ । ଦେଖିଲେ ଦୀର୍ଘ ବର୍ଷେ ହେଲା ଅଲ୍‌ସର୍ ବେମାରୀ ଭୋଗୁଛି ତା ସ୍ତ୍ରୀ ପାନ୍‌ପତ୍ରୀ । ବେଶୀ ଗୁଣୀଟୁଣି ଓ ଝଡ଼ାଫୁଙ୍କାରେ ରୋଗଟା ଆହୁରି ବଢ଼ିଯାଇଛି । ପାକସ୍ଥଳୀ ପାଖର ଅନ୍ତନାଡ଼ୀର ଗୋଟିଏ ଅଂଶ ସଂପୂର୍ଣ୍ଣ କଣା ହେଇଯାଇଛ ।

ପରିତୋଷବାବୁ ନିଜ ଖର୍ଚ୍ଚରେ ଏକ୍ସରେ ବାହାର କରାଇଥିଲେ ପାନପତ୍ରୀର । ରୋଗୀଣୀର ଯାହା ଅବସ୍ଥା ଅପରେସନ ଦ୍ୱାରା ସେହି ଅଂଶଟିକୁ ସଂପୂର୍ଣ୍ଣ ବାହାର କରି ନ ଫିଙ୍ଗିଲେ ସେ ଆଉ ବଞ୍ଚିବ ନାହିଁ । ସେ ଗମ୍ଭୀର ହୋଇ ପଦଲମ୍‌କୁ କହିଲେ-

ତୋ ସ୍ତ୍ରୀର ଅପରେସନ୍ ଦରକାର । ନହେଲେ ଏ ରୋଗ ଭଲ ହେବନାହିଁ । ତା ପେଟରେ ଗୋଟିଏ ଘା' ହୋଇଛି । ପଦଲମ୍ ଆଖି ବଡ଼ ବଡ଼ କରି ନିରୀହ ଦୃଷ୍ଟିରେ ଡାକ୍ତରଙ୍କ ମୁହଁକୁ ଚାହିଁ କହିଲା-

ହଁ- ବାବୁ ଦିଶାରୀ ସେୟା କହୁଥିଲା । ତା ପେଟଭିତରୁ ପରା ମୋଞ୍ଚାଏ ଅଡୁଆ ବାଳ ଆଉ ଖଣ୍ଡେ ହାଡ଼ ବାହାର କରି ମତେ ସେ ଦେଖେଇଲା । ଦୁଇଟା କୁକୁଡ଼ା ବଳି ଖାଇଲା ମାହାପୁରୁ ।

ଡାକ୍ତର ନନ୍ଦ ବିରକ୍ତ ହୋଇ କହିଲେ- ନାଇଁ ନାଇଁ ସେ କୁକୁଡ଼ା ଫୁକୁଡ଼ାରେ ତା ରୋଗ ଭଲ ହେବନାହିଁ । ତାକୁ ବଡ଼ ଅପରେସନ ଦରକାର । ସହରକୁ ନଗଲେ ଏଠି ତାପାଇଁ କିଛି ବ୍ୟବସ୍ଥା କରିହେବନାହିଁ । ହତାଶା ଦୃଷ୍ଟିରେ ପଦଲମ୍ ଡାକ୍ତରଙ୍କ ମୁହଁକୁ ଚାହିଁଲା ପାନପତ୍ରୀ ପୋଷିଥିବା ଦୁଇଟା କୁକୁଡ଼ାକୁ ରବିବାର ହାଟରେ ବିକି ୧୦୦ଟଙ୍କା ଧରି ସେ ଏଠିକି ଆସିଥିଲା । ଆଗରୁ ଦିଶାରୀ ମୂଳରେ ଦୁଇଶହଟଙ୍କା ସାରିଥିଲା । ଛୋଟ ଅଣଓସାରିଆ ବଣୁଆ ରାସ୍ତା ଟପିଗଲେ ଯେଉଁ ସୁଲିଆ ପାହାଡ଼ ଲମ୍ବିଯାଇଛି, ତାରି ସେ ପଟରେ ପଦଲମ୍‌ର ଗାଁ । ସୁରୁଜ ଦେବତା ଉଇଁବାର ଘଣ୍ଟାଟିଏ ପରେ ଲାଠିଏ ବେଳ ହେଲେ ତାଙ୍କର କିରଣ ତା ଗାଁରେ ପଡ଼େ । ଅଙ୍ଗନବାଡ଼ି ଦିଦି ବାରମ୍ବାର ତାଗିଦ୍ କରିବା ହେତୁ ସେ ପାନପତ୍ରୀର ମଲାହାଡ଼ ଦୁଇଟାଧରି ବଡ଼ କଷ୍ଟରେ ଏଠି ପହଞ୍ଚିଛି । ସରକାରଙ୍କ ଦ୍ୱାରା ଆୟୋଜିତ ଭ୍ରାମ୍ୟମାଣ ଚିକିତ୍ସା କେନ୍ଦ୍ରକୁ । ଡାକ୍ତର ପରିତୋଷ ନନ୍ଦ ଯାହାର ଥିଲେ ତତ୍ତ୍ୱାବଧାରକ ।

ଏଠୁ ପୁଣି ସହରକୁ ନେବା କଥା କହୁଛନ୍ତି ଡାକ୍ତରବାବୁ । ତା ମୁଣ୍ଡଟା ବୁଲେଇ ଦେଲା, ପାନପତ୍ରୀକୁ ସେ ଆଉ ବଞ୍ଚେଇ ପାରିବନି । ତାର ସବୁ ଆଶା ଭରସା ତୁଟିଗଲା । ପଦଲମ୍‌କୁ ନିରବ ଦେଖି ଡାକ୍ତର ନନ୍ଦ ଆଉଥରେ ଜୋର ଦେଇ କହିଲେ ।

କ'ଣ କହୁଛୁ ? ଆମ ଡାକ୍ତରଖାନା ଗାଡ଼ି ବ୍ୟବସ୍ଥା କରିଦେବି । କିଛି ପଇସା ପତ୍ର ଯୋଗାଡ଼ କରି କାଲି ସକାଳୁ ଆସିବୁ । ନହେଲେ ତୋ ସ୍ତ୍ରୀକୁ ବଞ୍ଚେଇବା କଷ୍ଟ ହେଇପଡ଼ିବ । ତାକୁ ଦୁଇ ବୋତଲ ରକ୍ତ ଦରକାର ।

ପଦଲମ୍‌ର ଆଉ ଟଙ୍କାଟିଏ ଯୋଗାଡ଼ କରିବାର ବି ସାମର୍ଥ୍ୟ ନଥିଲା । ଘରେ ଯାହା ଯୋଉଠି ଥିଲା ତାକୁ ବନ୍ଧାଛନ୍ଦା ଓ ବିକାଭଙ୍ଗା କରି ଦିଶାରୀ ଗୁଣିଆ କରିଥିଲା । ବୁଡ଼ିଗଲା ଲୋକର ଶେଷ ଆଶ୍ରା ଭଳି କୁକୁଡ଼ା ଦୁଇଟା ବିକି ଶହେ ଟଙ୍କା ଧରି ଏଠିକି ଆସିଥିଲା ।

ପାନପତ୍ରୀ ଭଲ ଥିଲାବେଳେ ଦୁଇଜଣ ଯାକ କୁଲିଭୂତି କରି ଯାହା ଆଣୁଥିଲେ, ତେଲଲୁଣ ଖର୍ଚ୍ଚ ସାଙ୍ଗକୁ ପଦଲମ୍‌ର ମଦପାଣି ଖର୍ଚ୍ଚ ବି ମେଣ୍ଟି ଯାଉଥିଲା । ପାନପତ୍ରୀ କାଇଲା ହେଲା ଦିନଠୁଁ ପଦଲମ୍ ଏକୁଟିଆ ଯାଉଛି କୁଲି । ସବୁଦିନେ ଏ କୁଲିଭୂତି କୋଉଠି ମିଳୁଛି ଯେ ! କାନ୍ତରାଟିମାନେ ତ ଟ୍ରଲି ଟ୍ରାକ୍ଟର କାମରେ ଲଗେଇ ଦେଉଛନ୍ତି ଯେ ବେଳେବେଳେ ଦିନ ଦିନ ଧରି ହାତ ବାନ୍ଧି ବସିବାକୁ ପଡୁଛି । ଏମିତି ଦିନମାନଙ୍କରେ ପାନପତ୍ରୀ ବଣକୁ ଯାଇ ଫଳମୂଳ କି କନ୍ଦାକନ୍ଦି ଆଣି ତାକୁ ଖୁଦ କି ମାଣ୍ଡିଆ ଚୁନା ସାଙ୍ଗରେ ମିଶେଇ ଚଳେଇ ଦେଉଥିଲା । ପାନପତ୍ରୀଟା ଭାରି ଭଲ କନ୍ଦା ରାନ୍ଧେ । ପଦଲମ୍‌ର ମନଟା ଟିକେ ନରମିଗଲା । ସତରେ କ'ଣ ପାନପତ୍ରୀ ଆଉ ବଞ୍ଚିବନି ?

କାଆଲି ପରି ଲାଗୁଛି । ସେ ପାନପତ୍ରୀକୁ ପ୍ରଥମ କରି ଦେଖିଥିଲା ନବରଙ୍ଗପୁର ମଣ୍ଡେଇରେ । ତା ଯୌବନ ଢଳଢଳ ଗୋରାତକ୍ ତକ୍ ବଳିଲା ବଳିଲା ଦେହ ସାଙ୍ଗକୁ ଡଉଲ ଡାଉଲ ମୁହଁ । କିଏ ତା ନାଁ ପାନପତ୍ରୀ ଦେଇଥିଲା କେଜାଣି ? ସତକୁ ସତ ଠିକ୍ ପାନପତ୍ର ଭଳି ତା ମୁହଁ । ପଦଲମ୍ ଆଉ ସମ୍ଭାଳି ପାରି ନଥିଲା ନିଜକୁ । ଲୁଙ୍ଗି ଉପରେ କଷି କରି ବାନ୍ଧିଥିବା ଗାମୁଛା ଖଣ୍ଡକ ଅଣ୍ଟାରୁ ଖୋଲି କେତେବେଳେ ସେ କି ଆବେଗରେ ପାନପତ୍ରୀ କାନ୍ଧରେ ପକେଇଦେଇଛି ତାର ସୋର୍ ନାହିଁ । ପାହାଡ଼ୀ ଝରଣା ଭଳି ତା ସାଙ୍ଗମାନଙ୍କର ଖିଲିଖିଲି ହସରେ ସେ ଚେତନା ଫେରିପାଇଲା । ଲାଜେଇ ଯାଇଥିଲା ପାନପତ୍ରୀ । ଆଉ ପଦଲମ୍ ବି ।

ଆଦିବାସୀ ପ୍ରଥା ଅନୁସାରେ ପୁରୁଷଟିଏ ପସନ୍ଦ କରିଥିବା ଝିଅର କାନ୍ଧରେ ଗାମୁଛାଟିଏ ପକେଇଦେଲେ ସେ ତାର ବାଲି ଫୁଲ ହୋଇଯାଏ । ତାକୁ ନେଇ ଘରସଂସାର କରିବାରେ ଆଉ ବାଧା ନଥାଏ ।

ପଦଲମ୍ ବାଲିଫୁଲ ବାନ୍ଧିଥିଲା ପାନପତ୍ରୀକୁ । ତାପରେ ଦିନେ ମାଇ ସଞ୍ଜବେଳେ ପାନପତ୍ରୀ ଝରଣାକୁ ପାଣି ଆଣିବାକୁ ଯାଇଥିବାବେଳେ ପଦଲମ୍ ତା ଗାଁରୁ ଆସି ଟାଣି ନେଇ ଯାଇଥିଲ। ନିଜ ଝୁପୁଡ଼ି କୁଡ଼ିଆକୁ । ପ୍ରତିବାଦ କରିନଥିଲା ପାନପତ୍ରୀ । ତା ସାଙ୍ଗ ଲଛନ୍ଦୀ ଗାଁରେ ଖବର ଦେଇଥିଲା ପାନପତ୍ରୀ ପଇସା ମୁଣ୍ଡି ଗଲା । ପଡ଼ିଶା ଗାଁର ଧାଙ୍ଗଡ଼ା ପଦଲମ୍‌କୁ । ଆଦିବାସୀ ବା ଦେଶୀୟା ସମ୍ପ୍ରଦାୟରେ

ଇଯେ ଅତି ସାଧାରଣ କଥା । ଏପ୍ରକାର ବିବାହକୁ ପଇସା ମୁଣ୍ଡି ବା ଉଦୁଲିଆ କହନ୍ତି । ଧାଙ୍ଗଡ଼ୀ ଗାଁର ଲୋକମାନେ ବର ପାଖରୁ ଆବଶ୍ୟକ ଟଙ୍କା ଓ ମଦପାଣି ଦାବୀ କରନ୍ତି । ସେସବୁ ଦାବୀ ପୁରଣ କରି ଧାଙ୍ଗଡ଼ା ଧାଙ୍ଗଡ଼ୀକୁ ନିଜର କରେ । ତଥାପି ଗାଁରେ ଏମିତି ଗୋଟିଏ ଗୋଟିଏ ଘଟଣା ଘଟିଲେ କେବେ ଘଟିନଥିବା ଘଟଣାଟିଏ ଘଟିଛି ଭଳି ଗାଁ ଦିନେ ଦୁଇଦିନ ପାଇଁ ହୁଲୁସ୍ଥୁଲୁ ହେଇଯାଏ । ସମସ୍ତେ ଛି ଛାକର କରନ୍ତି ଝିଅକୁ ତାପରେ ସବୁ ଶାନ୍ତ ହୋଇଯାଏ । ଏ ପ୍ରକାର ବିବାହର ପରବର୍ତ୍ତୀ କାର୍ଯ୍ୟକଳାପ ପାଇଁ ମୁଖିଆମାନେ ତତ୍ପର ହୋଇପଡ଼ନ୍ତି । ଏଠି ମଧ୍ୟ ତାର ବ୍ୟତିକ୍ରମ ହୋଇନଥିଲା ।

ଦୁଇଦିନ ପରେ ପାନପତ୍ରୀ ଗାଁର ମୁଖିଆ ଓ ଆଉ କେତେଜଣ ନେତୃସ୍ଥାନୀୟ ମିଶି ପଦଲମ୍ ଗାଁରେ ପହଞ୍ଚିଲେ । ସେ ଗାଁର ମୁଖିଆ ଦିଶାରୀ ଓ ଆଉ କେତେ ଲୋକ ବସି ଛିଡ଼ା ପଡ଼ା' ହେଲେ । ପାଞ୍ଚଶହ ଟଙ୍କାରେ କଥା ଛିଣ୍ଡିଲା । ଗାଁବାଲାଙ୍କର ଭୋଜିଭାତ ଆଉ ମଦପାଣି ଛାଡ଼ି । ଏମିତିରେ ହଜାରେ ଟଙ୍କା ଖର୍ଚ୍ଚ ହୋଇଥିଲା ତାର ପାନପତ୍ରୀ ପାଇଁ । ବିଭାଖର୍ଚ୍ଚ ପାଇଁ କିଛି ପଇସା ସେ ରଖିଥିଲା । ବାକି ପାଂଚଶହ ଟଙ୍କାପାଇଁ ତାକୁ ସାହୁକାର ପାଖରେ ଛଅମାସ ହଳିଆ ରହିବାକୁ ପଡ଼ିଥିଲା ।

ଆଜି ଆଉ ପାନପତ୍ରୀର ସେ ରୂପ ନାହିଁ କି ଯୌବନ ନାହିଁ । ତା ଚେହେରା ଦେଖିଲେ ମନେ ହେଉଥିଲା, ଇଯେ ଯେମିତି ତାର ଡୁମା । ପଦଲମ୍‌ର ମନଟା ବିଷେଇଗଲା ।

ଡାକ୍ତରବାବୁ ତାକୁ ତାଗିଦ୍ କରିବା ଭଙ୍ଗରେ ଆଉ ଥରେ ପ୍ରଶ୍ନ କଲେ । କ'ଣ ଏତେ ଭାବୁଛୁ ପଦଲମ୍ ? ଆଉ ଚିନ୍ତା କରନା । ତୁ ବହୁତ ଡେରି କରିଦେଇଚୁ । ଯାଆ କାଲି ସକାଳୁ ପ୍ରସ୍ତୁତ ହେଇଆସିବୁ । ମୁଁ ଡାକ୍ତରଖାନା ଗାଡ଼ି ଯୋଗାଡ଼ କରିଦେଇଥିବି । ଆମର ଜଣେ ଲୋକକୁ ବି ପଠେଇବି ତୋ ସାଙ୍ଗରେ । ମୋ' ଠୁଁ ଚିଠିଟିଏ ନେଇ ସହରକୁ ଯିବୁ । ଖୁବ୍ କମ୍ ପଇସାରେ ଅପରେସନ୍‌ଟା ହେଇଯିବ ।

କମ୍ ପଇସା କଥା ଶୁଣି ପଦଲମ୍‌ର ଟିକେ ସାହସ ସଞ୍ଚୟ ହେଲା । ସେ ମୁଣ୍ଡ ଟେକି ଡାକ୍ତରଙ୍କ ମୁହଁକୁ ଚାହିଁ କହିଲା ।

–କେତେ ପଇସା ଲାଗିବ ବାବୁ ?

ଡାକ୍ତରବାବୁ ତାକୁ ଚିନ୍ତାମୁକ୍ତ କରିବାପାଇଁ ଆଶ୍ୱାସନା ଦେଇ କହିଲେ । ଏମିତିରେ ତ ପାଞ୍ଚ ସାତ ହଜାର ଲାଗିଥା'ନ୍ତା । ତୁ ଖାଲି ଦୁଇବୋତଲ ରକ୍ତ ଆଉ ଔଷଧପତ୍ର ଖର୍ଚ୍ଚ ବାବଦକୁ ଦୁଇ ହଜାର ଟଙ୍କା ଯୋଗାଡ଼ କରି ଆଣ୍ । ବାକି ସବୁ ମୁଁ ବୁଝିବି ।

ଆଁ...ଏଁ....

ଆକାଶରୁ ଖସିପଡ଼ିବା ଭଳି ଅନୁଭବ କଲା ପଦଲମ୍ ।

ଦୁଇହଜାର ଟଙ୍କା ! ତା ପାଟି ଆଁଫା ଆଁଫା ହୋଇଗଲା । କାନ୍ଦ କାନ୍ଦ ହେଇ ସେ ଦୁଇହାତ ଯୋଡ଼ି କହିଲା । ମୁଇଁ ଗରିବ ଲୋକ ବାବୁ । କାଇଟା କରି ଯୋଗାଡ଼ କରିବି ଦୁଇ ହଜାର ଟଙ୍କା, ମାଇଜିକୁ ଭଲ କରିବାପାଇଁ ପାଇଁ ?

ନହେଲେ ତୋ ମାଇଜିଟା ମରିଯିବ ଯେ ? ତା'ରି ଭାଷାରେ ତାକୁ ବୁଝାଇବାକୁ ଚେଷ୍ଟା କଲେ ଡାକ୍ତରବାବୁ । ପଦଲମ୍ ବସିବା ଜାଗାରୁ ଉଠି ଠିଆ ହେଲା । ଡାକ୍ତର ବାବୁଙ୍କୁ ଜୁହାରଟାଏ ହେଇ କହିଲା–

ବଞ୍ଚିବା ମରିବା ସେଇ ଡୁମା ଦେବତାର ବିଚାର ମହାପୁରୁ । ପାନ୍‌ପତ୍ରୀର ଯଦି ମରିବାର ଥିବ ତ ସେ ମରିବ । ମୁଇଁ କିସ୍ କରିବି ନା ତୁଇଁ କିସ୍ କରିବୁ ବାବୁ ? ତାକୁ ଉଦୁଲିଆ ଆଣିବା ବେଳେ ମୋତେ ହଜାରେ ଟଙ୍କା ପଡ଼ିଥିଲା । ତାକୁ ବହୁ କଷ୍ଟରେ ସୁଝିଲି ବାବୁ ସାଉକାର ଘରେ ଗୋତିରହି । ଏବେ ଆହୁରି ଦୁଇହଜାର ଟଙ୍କା ମୁଁ କୁଆଡୁ ପାଇବି ବାବୁ । ଆଉ ଗୋଟେକ୍ ହଜାର ଟଙ୍କା ସାରିଲେ ମତେ ଆଉ ଗୋଟେ ନୂଆ ମାଇଜି ମିଳିଯିବ । ତାର ମଇଳା କୋଚଟ ଗାମୁଛାରେ ଦୁଇଆଖିରୁ ଗଡ଼ିଯାଉଥିବା ଲୁହକୁ ପୋଛୁ ପୋଛୁ ସେ କହିଲା ।

ଆଜ୍ଞା ମୋ ଆଖି ଆଗରେ ପାନପତ୍ରୀକୁ ମରିବା ଦେଖି ପାରିବିନି । ସିଏ ଯଦି ମରିଯାଏ ଏଇ ଧର୍‌ତୀ ମାଙ୍କୁ ସାକ୍ଷୀରଖି ଏଇ ନଈ ମାଆ ଗର୍ଭରେ ଭସେଇଦେବି ମାହାପୁରୁ । ମୁଁ ଯାଉଛି ।

ଡାକ୍ତରବାବୁ କିଛି କହିବା ପୂର୍ବରୁ ଜୁହାରଟିଏ ହେଇ ବଣୁଆ ରାସ୍ତାରେ ଅଦୃଶ୍ୟ ହେଇଗଲା ପଦଲମ୍ ।

ହତଭମ୍ଭ ହୋଇପଡ଼ିଲେ ଡାକ୍ତର ନନ୍ଦ । ପୁରୁଷ ପାଖରେ– ନାରୀଟିଏ କ'ଣ ଏତେ ସହଜଲଭ୍ୟ ? ସଭ୍ୟ ସମାଜରେ ଝିଅଟିକୁ ବାହା ଦେବାପାଇଁ ମୂଳଚାଲ ହୁଏ । ଗୃହପାଳିତ ପଶୁର କିଣାବିକା ଭଳି ଝିଅଟିକୁ ଖୁଣ୍ଟି ନାଣ୍ଟି ପରଖ କରି ଗ୍ରହଣ କରାଯାଏ । ତାହା ପୁଣି ଯୌତୁକ ସହ । ଆଦିବାସୀ ସମାଜରେ ଅର୍ଥ ବିନିମୟରେ ନାରୀଙ୍କୁ ସ୍ତ୍ରୀ ରୂପରେ ଗ୍ରହଣ କରାଯାଏ । ଆଉ ପଦଲମ୍ ଭଳି ଯୁବକମାନେ ରୋଗିଣା ସ୍ତ୍ରୀର ରୋଗ ଉପଶମ ପାଇଁ ଅର୍ଥ ବ୍ୟୟ କରିବା ପରିବର୍ତ୍ତେ ସେହି ଅର୍ଥରେ ନୂତନ ସ୍ତ୍ରୀ ଗ୍ରହଣ କରିବାକୁ ଉପଯୁକ୍ତ ମନେକରନ୍ତି । ଗୃହପାଳିତ ପଶୁଠାରୁ ବି ନାରୀ ହୀନ । ଏହା ଆମ ଦେଶର ଦୁର୍ବଳ ଆର୍ଥିକ ସ୍ଥିତିର ଏକ ଉତ୍ପୀଡ଼କ

ଲ୍ୟାଣ୍ଡସ୍କେପ୍ ନା ଦର୍ପିତ ପୁରୁଷର ସର୍ବଗ୍ରାସୀ କାମନା ନିକଟରେ ବଳି ପଡୁଥିବା ନିରୁପାୟ ନାରୀର ଅସହାୟତା ? କୌଣସି ଗୋଟିଏ ସ୍ଥିର ବିନ୍ଦୁରେ ପହଞ୍ଚି ପାରୁନଥିଲେ ଡାକ୍ତର ପରିତୋଷ ।

ପଦଲମ୍ କେତେବେଳୁ ଅଦୃଶ୍ୟ ହୋଇଗଲାଣି । ଏକ ନୂତନ ଘର ସଂସାର କରିବାର ଆବେଗିକ କଳ୍ପନା ଭିତରେ ହୁଏତ ତାର ପାନପତ୍ରୀ ପ୍ରତି ଥିବା ସ୍ମୃତିରେ ଅଳନ୍ଧୁ ଜମିଯିବ କିନ୍ତୁ ନାରୀମାନଙ୍କ ପ୍ରତି ପୁରୁଷର ଏପ୍ରକାର ହୀନ ମାନସିକତା ଆଉ କେତେଦିନ ସମାଜକୁ କଳଙ୍କିତ କରୁଥିବ ।

ଏଥିରୁ କ'ଣ ମୁକ୍ତି ନାହିଁ ?

ଏକ ଅନ୍ତହୀନ ପ୍ରଶ୍ନ ପୀଡ଼ିତ କରୁଥିଲା ଡକ୍ଟର ନନ୍ଦଙ୍କୁ ।

ସେ ଫେରିଆସିଲେ ପାନପତ୍ରୀର ରୋଗଶଯ୍ୟା ପାଖକୁ । କିଛି ଗୋଟିଏ କରିବାକୁ ହେବ ନହେଲେ ଅନର୍ଥ ହେଇଯିବ ଯେ !



'ପିତୃଋଣ' ଗଳ୍ପ ସଂକଳନଟିରେ ସନ୍ନିବେଶିତ ପ୍ରତ୍ୟେକ ଗଳ୍ପ ମୋ ଅନ୍ତର୍ଭେଦୀ ଅନୁଭବର ସାରବତ୍ତା । ସମାଜରେ 'ଏମିତି ସବୁ ଘଟୁଛି', 'ଘଟୁଥାଇପାରେ' ଭଳି ଅନ୍ଦାଜ କରି ମୁଁ ଲେଖିନାହିଁ । ପ୍ରିୟ ଅସତ୍ୟ ଗଳ୍ପରେ 'ବ୍ଲାଇଟେଡ୍ ଓଭମ୍'ର ଶିକାର ହୋଇଥିବା ସନ୍ତାନାକାଂକ୍ଷିଣୀ ନାରୀଟିର ଛାତିଫଟା କୋହ ମୁଁ ଅତି ପାଖରୁ ଦେଖିଛି । 'ଅଭିଶପ୍ତ ଗାନ୍ଧର୍ବୀ'ର ହା' ହୁତାଶ ମୋତେ ଅସ୍ଥିର କରିଦେଇଛି । 'କଳଙ୍କର ଟୀକା'ର ସୁଦର୍ଶନ ଚରିତ୍ର ଭଳି ଚରିତ୍ରଟିଏ ଶୈଶବରେ ଥିଲା ମୋ ଅନ୍ତରଙ୍ଗ । ମୋ ଗାଁର କିମ୍ବଦନ୍ତୀ ବନିଯାଇଥିବା ସୁଲି ଓ ରଘୁ ଏବେ ବି ମୋ ହାତ ପାହାନ୍ତାର ଚରିତ୍ର । 'ବିବର୍ଣ୍ଣ ବସନ୍ତର ଭୋକ' ଗଳ୍ପଟି ବର୍ଷ ବର୍ଷ ଧରି ମନତଳେ ଅବଗୁମ୍ଫିତ ହୋଇଥିବା ମୋ ଅଙ୍ଗେନିଭା ଅନୁଭବଟିଏ ।

– ବାସନ୍ତୀ ମହାନ୍ତି

ISBN 81-903558-6-4